# ଉତ୍କଳ ପ୍ରସଙ୍ଗ

## The Utkal Prasanga

୬୨ ଭାଗ | ୭ମ-୮ମ ସଂଖ୍ୟା | ମାଘ-ଚୈତ୍ର | ଫେବୃଆରୀ-ମାର୍ଚ୍ଚ - ୨୦୦୬

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ**
**ମାନସ ରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***


---




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୩୯୪୫୧୩, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ

# ଜନ୍ମମାସରେ ଶ୍ରଦ୍ଧାଞ୍ଜଳି



ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ

# ସୂଚନା ଅଧିକାର ଆଇନର ଗତି, ସ୍ଥିତି ଓ ପ୍ରକୃତି

ଗୁରୁକଲ୍ୟାଣ ମହାପାତ୍ର

ଭାରତ ପରି ଏକ ଗଣତାନ୍ତ୍ରିକ ଓ ପ୍ରଜାମଙ୍ଗଳ ରାଷ୍ଟ୍ରରେ ପ୍ରଶାସନକୁ ଅଧିକ ସ୍ୱଚ୍ଛ ଓ ଉତ୍ତରଦାୟୀ କରିଯିବାର ମୂଳଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ନେଇ ଗତବର୍ଷ ଭାରତରେ ଯେଉଁ ସୂଚନା ଅଧିକାର ଆଇନ-୨୦୦୫ ପ୍ରଣୀତ ହୋଇଛି, ତାହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ନିଶ୍ଚୟ । ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧଶତାବ୍ଦୀ ଅତିକ୍ରମ କରିବା ପରେ ଏପରି ଏକ ଯୁଗାନ୍ତକାରୀ ଆଇନ ପ୍ରଣୀତ ହୋଇଥିବା ଘଟଣା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ ହୋଇଥାଏ ।

ଓଡ଼ିଶା ସରକାର ମଧ୍ୟ ଏହି ସୂଚନା ଅଧିକାର ଆଇନକୁ ଗତ ୨୦୦୫ ଅକ୍ଟୋବର ୧୨ ତାରିଖରୁ କାର୍ଯ୍ୟକାରୀ କରିଥିବା ଆନନ୍ଦର ବିଷୟ । ରାଜ୍ୟ ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ଏଥିପାଇଁ ନିୟମାବଳୀ ପ୍ରସ୍ତୁତ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଚାହିଁବାରୁ ବିଭାଗୀୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ସମେତ ମୁଖ୍ୟ ଶାସନ ସଚିବ ଡଃ ସୁବାସ ପାଣି, ବିଭାଗୀୟ ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି ଓ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଏଥିପାଇଁ ଯତ୍ନବାନ ହୋଇଥିଲେ । ବିଭାଗୀୟ ଅନ୍ୟାନ୍ୟ ସୂଚନା ଅଧିକାରୀମାନେ ମଧ୍ୟ ସେ ଦିଗରେ ସହଯୋଗ କରିଥିଲେ । ଏହାପରେ ମୁଖ୍ୟମନ୍ତ୍ରୀଙ୍କ ଅଧକ୍ଷତାରେ ଗଠିତ ତିନି ଜଣିଆ ନିଯୁକ୍ତି କମିଟି ରାଜ୍ୟର ମୁଖ୍ୟ ସୂଚନା କମିଶନର ଭାବେ ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ ଓ ସୂଚନା କମିଶନର ଭାବେ ପ୍ରଫେସର ରାଧାମୋହନଙ୍କୁ ନିଯୁକ୍ତ କରିଥିଲେ ।

ତେବେ 'ସୂଚନା ଅଧିକାର ଅଧିନିୟମ-୨୦୦୫' ଯାହା ରାଜ୍ୟ ସରକାର ପ୍ରସ୍ତୁତ କରିଛନ୍ତି, ସେ ବିଷୟରେ ଅଧିକାଂଶ ଶିକ୍ଷିତ ଓ ସଚେତନ ନାଗରିକ ହୁଏତ ଅବଗତ ଥିବେ । ଓଡ଼ିଆ ସମ୍ବାଦପତ୍ରମାନଙ୍କରେ ସେହି ଅଧିନିୟମ ବିଷୟଗୁଡ଼ିକ ବହୁଳ ଭାବେ ବିଜ୍ଞାପିତ ମଧ୍ୟ ହୋଇସାରିଛି । ତେଣୁ ସେସବୁ ବିଷୟରେ ଅଧିକ କିଛି ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ବୋଲି ମୁଁ ମନେ କରୁଛି ।

ତେବେ ଆମ ସମ୍ବିଧାନର ୧୯ ଅଧ୍ୟାୟରେ କଥା କହିବାର କିମ୍ବା ଭାବ ପ୍ରକାଶ କରିବାର ଅଧିକାର ନିର୍ଣ୍ଣିତ ହୋଇଛି । ତେଣୁ ଏପରି ସୂଚନା ଅଧିକାର ଆଇନ ପ୍ରଣୀତ ହୋଇନଥିଲେ ପ୍ରକୃତରେ ଆମ ସମ୍ବିଧାନର ସେହି ଅଂଶତକ ନିରର୍ଥକ ବୋଲି ମନେ ହୋଇଥାନ୍ତା । ବରଂ ସମଗ୍ର ବିଶ୍ୱରେ ମାନବିକ ଅଧିକାର ପାଇଁ ଯେଉଁ ଘୋଷଣାନାମା ରହିଛି, ଏହି ଯୁଗାନ୍ତକାରୀ ଆଇନ ସତେ ଯେପରି ତାହାର ପରିପୂରକ ।

ଅନୁଧ୍ୟାନରୁ ଜଣାଯାଇଛି ଯେ ଏପରି ସୂଚନାଗତ ଅଧିକାରକୁ ରାଷ୍ଟ୍ରୀୟ ଆଇନ ପରିସରଭୁକ୍ତ କରିବା ଲାଗି ସର୍ବପ୍ରଥମେ National Campaign for People's Right to Information (NCPRI) ବା 'ସର୍ବସାଧାରଣଙ୍କ ସୂଚନା ଅଧିକାର ସକାଶେ ଜାତୀୟ ଅଭିଯାନ' ଶୀର୍ଷକ ଏକ ସଂସ୍ଥା (ଯାହାକି ୧୯୯୬ରେ କତିପୟ ବିଶିଷ୍ଟ ନାଗରିକଙ୍କ ଦ୍ୱାରା ଗଠିତ ହୋଇଥିଲା) ପ୍ରଥମେ ପଦକ୍ଷେପ ଗ୍ରହଣ କରିଥିଲା । ଏହି ଏନ୍.ସି.ପି.ଆର୍.ଆଇ. ସଂସ୍ଥା ସୂଚନା ପ୍ରାପ୍ତିର ଅଧିକାର ନିମନ୍ତେ ଯେଉଁ ଚିଠା ପ୍ରସ୍ତୁତ କରିଥିଲେ, ଭାରତର ପ୍ରେସ୍ କାଉନସିଲଙ୍କ ସହ ବ୍ୟାପକ ବିଚାର ବିମର୍ଷ ପରେ ତାହା ତତ୍କାଳୀନ ଜାତୀୟ ଗଣତାନ୍ତ୍ରିକ ମେଣ୍ଟ (NDA) ସରକାରଙ୍କ ଅମଳରେ ସଂସଦ ମଧ୍ୟକୁ ପ୍ରବେଶ କରିବାର ସୌଭାଗ୍ୟ ଲାଭ କରିଥିଲା । ତତ୍କାଳୀନ ଜାତୀୟ ଗଣତାନ୍ତ୍ରିକ ମେଣ୍ଟର ସରକାର ସେହି ସୂଚନାଗତ ଅଧିକାର ସଂକ୍ରାନ୍ତୀୟ ବିଲ୍ ବା ବିଧେୟକଟିକୁ ତନ୍ନ ତନ୍ନ କରି ପରୀକ୍ଷାନିରୀକ୍ଷା କରିବା ପରେ ୨୦୦୨ ମସିହାରେ ତାହାକୁ ସଂସଦର ଉଭୟ ସଦନରେ ଅନୁମୋଦିତ କରାଇ ଆଇନରେ ପରିଣତ କରାଇଥିଲେ ।

ସେହି ସୂଚନାଗତ ସ୍ୱାଧୀନତା ବିଲ୍ ୨୦୦୨ଟି ସେତେବେଳେ ସଂସଦରେ ପାରିତ ହେବାପୂର୍ବରୁ ଗତ ୨୦୦୨ ଡିସେମ୍ବର ମାସର ୧୬ ତାରିଖରେ କେନ୍ଦ୍ର ସରକାରଙ୍କ ତତ୍କାଳୀନ ପର୍ସୋନାଲ ଓ ସାଧାରଣ ଅଭିଯୋଗ ବିଭାଗର ରାଷ୍ଟ୍ରମନ୍ତ୍ରୀ ପ୍ରଥମେ ରାଜ୍ୟସଭାରେ ସେହି ବିଲ୍‌ଟିକୁ ଆଗତ କରିଥିଲେ । ସେ ସମୟରେ ମାନ୍ୟବର ରାଷ୍ଟ୍ରମନ୍ତ୍ରୀ ରାଜ୍ୟସଭାର ସାଂସଦମାନଙ୍କ ସଂଶୟକୁ ଦୂର କରି କହିଥିଲେ ଯେ ସେହି ନୂତନ ସୂଚନାଗତ ଆଇନ ବ୍ୟବସ୍ଥାରେ ସରକାରୀ ଗୋପନୀୟ ତଥ୍ୟ ଆଇନର ବିରୋଧାଚରଣ କରାଯାଇନାହିଁ । ଉଲ୍ଲେଖନୀୟ ଯେ, ବ୍ରିଟିଶ ସରକାରଙ୍କ ଅମଳରୁ ଗତ ୧୯୨୩ ମସିହାରେ ଭାରତରେ ଯେଉଁ ସରକାରୀ ଗୋପନୀୟ ଆଇନ ପ୍ରଣୀତ ହୋଇଥିଲା, ତାହାର ଗୁରୁତ୍ୱ ସେହି ନୂତନ ଆଇନ ବ୍ୟବସ୍ଥାରେ ପ୍ରାୟ ଲୋପ ପାଇଯାଇଥିଲା ।

ଜାତୀୟ ଗଣତାନ୍ତ୍ରିକ ମେଣ୍ଟ ବା ଏନ୍.ଡି.ଏ. ସରକାର ତାଙ୍କର ନିର୍ବାଚନ କାର୍ଯ୍ୟସୂଚୀ ବା ଇସ୍ତାହାରରେ ଏହି ସୂଚନାଗତ ସ୍ୱାଧୀନତା ଆଇନ ପ୍ରଣୟନ ବିଷୟଟିକୁ ଅନ୍ତର୍ଭୁକ୍ତ କରିଥିବାରୁ ଗତ ୨୦୦୨ ମସିହାରେ ଏନ୍.ଡି.ଏ. ସରକାର ତାହାକୁ ପ୍ରଣୟନ କରିବାକୁ ଏକ ପ୍ରକାର ବାଧ ହୋଇଥିଲେ । ଏହା ଫଳରେ ସେତେବେଳେ ସମଗ୍ର ବିଶ୍ୱରେ ଯେଉଁ ୨୦ଟି ରାଷ୍ଟ୍ର ଏପରି ଆଇନ୍ ପ୍ରଣୟନ କରି ପ୍ରଶାସନିକ ସ୍ୱଚ୍ଛତା, ସାବଲୀଳତା ଓ ଉତ୍ତରଦାୟିତ୍ୱର ପ୍ରତିଶ୍ରୁତି ରଖି ଯାଇଥିଲେ, ଭାରତ ସେମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବାର ଗୌରବ ଅର୍ଜନ କରିପାରିଥିଲା । ଅବଶ୍ୟ ସେହି ସୂଚନାଗତ ଆଇନଟି ପ୍ରଣୀତ ହେବା ପୂର୍ବରୁ ତା'ଉପରେ ବେଶ୍ କସରତ ଆରମ୍ଭ ହୋଇଥିଲା । ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ସେହି ଆଇନଟି ପ୍ରସ୍ତୁତ କରିବା ଲାଗି ପ୍ରଥମେ ଶ୍ରୀ ଏଚ୍.ଡି. ସୌରୀଙ୍କୁ ନେଇ କମିଟି ନିଯୁକ୍ତ କରିଥିଲେ । ସୌରୀ କମିଟି ସେହି ଆଇନ ପାଇଁ ଚିଠା ପ୍ରସ୍ତୁତ କରି କେନ୍ଦ୍ର ସରକାରଙ୍କୁ ସେ ସଂକ୍ରାନ୍ତୀୟ ରିପୋର୍ଟ ପ୍ରଦାନ କରିଥିଲେ । ଏହାପରେ ତାହା ବିଲ୍‌ରେ ପରିଣତ ହୋଇଥିଲା । ମାତ୍ର ତତ୍କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଲାଲକୃଷ୍ଣ ଆଡଭାନୀ ସେହି ବିଲ୍‌ଟିକୁ ଭଲଭାବେ ପରୀକ୍ଷା କରିବାକୁ ଚାହିଁଥିଲେ । ତେଣୁ ଶ୍ରୀ ଆଡଭାନୀଙ୍କ ଅଧ୍ୟକ୍ଷତାରେ ସେଥିପାଇଁ ଏକ ମନ୍ତ୍ରୀସ୍ତରୀୟ କମିଟି ଗଠିତ ହୋଇଥିଲା । କମିଟିର ଅନ୍ୟ ତିନିଜଣ କେନ୍ଦ୍ରମନ୍ତ୍ରୀ ମଧ୍ୟ ସଦସ୍ୟ ଥିଲେ । ସେମାନେ ହେଲେ ଶ୍ରୀ ରାମ ଜେଠାମାଲାନୀ, ଶ୍ରୀ ଅରୁଣ ସୌରୀ ଓ ଶ୍ରୀ ପ୍ରମୋଦ ମହାଜନ । ଏହି ମନ୍ତ୍ରୀସ୍ତରୀୟ କମିଟି ସେହି ସୂଚନାଗତ ଅଧିକାର ବିଲ୍‌ଟି ଉପରେ ତନ୍ନ ତନ୍ନ ପରୀକ୍ଷା କରି ଆଇନ ମନ୍ତ୍ରଣାଳୟକୁ ଏକ ଚିଠା ପ୍ରଦାନ କରିଥିଲେ । ଏହାପରେ ମଧ୍ୟ ବହୁ ପରୀକ୍ଷାନିରୀକ୍ଷା ହେଲା । ଆଉ ଦୀର୍ଘଦିନର ବ୍ୟବଧାନ ପରେ ସେହି ବିଲ୍ ବା ବିଧେୟକଟି ଶେଷରେ ୨୦୦୨ ମସିହାରେ ଆଇନରେ ପରିଣତ ହୋଇଥିଲା । ଯଦିଓ ସେ ସଂକ୍ରାନ୍ତରେ କେନ୍ଦ୍ରୀୟ ଗେଜେଟରେ ବିଜ୍ଞପ୍ତି ପ୍ରକାଶ ଶେଷ ପର୍ଯ୍ୟନ୍ତ ପାଇପାରିନଥିଲା ।

ଇତିମଧ୍ୟରେ କେନ୍ଦ୍ରରେ ୟୁ.ପି.ଏ. ବା ସଂଯୁକ୍ତ ପ୍ରଗତିଶୀଳ ମେଣ୍ଟର ସରକାର କ୍ଷମତାସୀନ ହେବା ପରେ ସେମାନଙ୍କ ନିର୍ବାଚନ ଇସ୍ତାହାର (ସାଧାରଣ ସର୍ବନିମ୍ନ କାର୍ଯ୍ୟସୂଚୀ ବା Common Minimum Programme) ଅନୁଯାୟୀ ସୂଚନା ଅଧିକାର ଆଇନକୁ ଗତ ୨୦୦୫ ମସିହାରେ କାର୍ଯ୍ୟକାରୀ କରାଯାଇଥିଲା । ସଂସଦର ଉଭୟ ସଦନରେ ଏହି ବିଲ୍‌ଟି ପାରିତ ହେବା ପୂର୍ବରୁ ପ୍ରଧାନମନ୍ତ୍ରୀ ଡଃ ମନମୋହନ ସିଂ ଲୋକସଭାରେ ଦର୍ଶାଇଥିଲେ ଯେ ସେହି ନୂତନ ଆଇନର ବ୍ୟବସ୍ଥାରେ ସୂଚନାଗତ ସ୍ୱାଧୀନତା ଆଇନ୍, ୨୦୦୨ର ପରିବର୍ତ୍ତନ କରାଯାଉଛି, ଯେହେତୁ ସେହି ଆଇନଟି ଦୁର୍ବଳ ଥିଲା । ସେହି ଆଇନଟି ମଧ୍ୟ କେନ୍ଦ୍ରୀୟ ଗେଜେଟ୍‌ରେ ପ୍ରକାଶ ପାଇନଥିଲା । ସେହି ବିଲ୍‌ଟି ଉପରେ ହୋଇଥିବା ଆଲୋଚନାର ଉତ୍ତର ଦେଇ ପ୍ରଧାନମନ୍ତ୍ରୀ ଡଃ ସିଂ ପୁଣି କହିଥିଲେ ଯେ ୨୦୦୨ରେ ପ୍ରଣୀତ ସୂଚନାଗତ ସ୍ୱାଧୀନତା ଆଇନରେ ଥିବା ଯାବତୀୟ ତ୍ରୁଟି ବିଚ୍ୟୁତିକୁ ଶ୍ରୀମତୀ ସୋନିଆ ଗାନ୍ଧୀଙ୍କ ଅଧ୍ୟକ୍ଷତାରେ ଗଠିତ ଜାତୀୟ ପରାମର୍ଶଦାତା ପରିଷଦ (National Advisory Council) ସୁଧାରିବାକୁ ସକ୍ଷମ ହୋଇଥିଲେ । ତେଣୁ ୨୦୦୫ ମସିହାର ସେହି ସୂଚନା ଅଧିକାର ବିଲ୍‌ଟି ସଂସଦର ଉଭୟ ସଦନରେ ପାରିତ ହୋଇ ଆଇନରେ ପରିଣତ ହେବା ସଂଗେସଂଗେ ରାଷ୍ଟ୍ରପତିଙ୍କର ସ୍ୱୀକୃତି ପାଇଲେ ୨୦୦୨ର ସୂଚନାଗତ ସ୍ୱାଧୀନତା ଆଇନଟି ନିଷ୍କ୍ରିୟ ହୋଇଯିବ ବୋଲି ପ୍ରଧାନମନ୍ତ୍ରୀ ଡଃ ସିଂ ସେତେବେଳେ ଲୋକସଭାରେ ପ୍ରକାଶ କରିଥିଲେ । ତେବେ ସଂସଦର ଉଭୟ ଗୃହରେ ଗତ ୨୦୦୫ ମଇ ୧୧ ତାରିଖରେ ଏହି ବିଲ୍‌ଟି ପାରିତ ହୋଇ ଆଇନରେ ପରିଣତ ହୋଇଥିଲା ଓ ପରେ ତାହା ୨୦୦୫ ଜୁନ୍‌ରେ ରାଷ୍ଟ୍ରପତିଙ୍କର ସ୍ୱୀକୃତି ଲାଭ କରିଥିଲା । ୨୦୦୫ ଅକ୍ଟୋବର ୧୩ରୁ ଏହି ଆଇନ ସଂପୂର୍ଣ୍ଣ ଭାବେ କାର୍ଯ୍ୟକାରୀ ହୋଇଥିଲା ।

ଏହି ସୂଚନା ଅଧିକାର ଆଇନ ୨୦୦୫ ଭାରତରେ ସର୍ବତ୍ର କାର୍ଯ୍ୟକାରୀ ହେବା ପରେ ୧୯୨୩ ମସିହାରେ ପ୍ରଣୀତ ସରକାରୀ ଗୋପନୀୟ ଆଇନ ବା ଅନୁରୂପ ଆଇନଗୁଡ଼ିକର ଅବସାନ ଘଟିଥିବା ଜଣାଯାଇଛି ।

ଓଡ଼ିଶାରେ ଏହି ଆଇନ କାର୍ଯ୍ୟକାରୀ ହେବା ପୂର୍ବରୁ ତାମିଲନାଡୁ, ଗୋଆ, ରାଜସ୍ଥାନ, କର୍ଣ୍ଣାଟକ, ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଆସାମ, ଦିଲ୍ଲୀ ପ୍ରଭୃତି ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳରେ ପୂର୍ବରୁ ସୂଚନାଗତ ସ୍ୱାଧୀନତା ଆଇନ - ୨୦୦୨ କାର୍ଯ୍ୟକାରୀ ହୋଇଥିଲା । ମାତ୍ର ଓଡ଼ିଶାରେ ସେହି ଆଇନକୁ କାର୍ଯ୍ୟକାରୀ କରାଯାଇନଥିଲା । ସେହି ଆଇନ ମଧ୍ୟ ବଦଳିଗଲା । ମାତ୍ର ଏହି ସୂଚନା ଅଧିକାର ଆଇନ - ୨୦୦୫ ଓଡ଼ିଶାରେ ଗତ ୨୦୦୫ ଅକ୍ଟୋବର ୧୨ରୁ କାର୍ଯ୍ୟକାରୀ ହୋଇଛି । ଏଥିପାଇଁ ନିୟମାବଳୀ ମଧ୍ୟ ପ୍ରସ୍ତୁତ ହୋଇସାରିଛି । ଆବଶ୍ୟକସ୍ଥଳେ ତ୍ରୁଟି ରହିଥିବା ନିୟମାବଳୀର ସଂଶୋଧନ ରାଜ୍ୟବାସୀଙ୍କ ସ୍ୱାର୍ଥ ଦୃଷ୍ଟିରୁ କରିବାକୁ ରାଜ୍ୟ ସରକାର ମଧ୍ୟ ଇଚ୍ଛା ପ୍ରକାଶ କରିଛନ୍ତି । ଏହି ଆଇନରେ କେନ୍ଦ୍ର ସରକାର ପ୍ରସ୍ତୁତ କରିଥିବା ନିୟମାବଳୀ ଓ ରାଜ୍ୟ ସରକାର ପ୍ରସ୍ତୁତ କରିଥିବା ନିୟମାବଳୀ ମଧ୍ୟରେ କୌଣସି କାରଣରୁ ମତପାର୍ଥକ୍ୟ ଉପୁଜିଲେ, କେନ୍ଦ୍ରୀୟ ନିୟମାବଳୀର ବ୍ୟବସ୍ଥା ବଳବତ୍ତର ରହିବ ବୋଲି କେନ୍ଦ୍ର ସରକାର ଏହି ଆଇନରେ ବ୍ୟବସ୍ଥା ରଖିଛନ୍ତି ।

ଏହି ଆଇନ ପରିସର ମଧ୍ୟରେ ସମସ୍ତ କେନ୍ଦ୍ରୀୟ ଓ ରାଜ୍ୟ ସରକାରଙ୍କ ସଂସ୍ଥା ସମେତ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକ ତ ଅନ୍ତର୍ଭୁକ୍ତ ହୋଇଛନ୍ତି । ସରକାର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଆର୍ଥିକ ସହାୟତା ପ୍ରଦାନ କରୁଥିବା ସରକାରୀ ଓ ବେସରକାରୀ ସଂସ୍ଥାଗୁଡ଼ିକ ମଧ୍ୟ ଏହି ଆଇନର ପରିସରଭୁକ୍ତ ବୋଲି ଜଣାଯାଇଛି ।

ଏହି ଆଇନଟି ଯଦି ଫଳପ୍ରଦ ଭାବେ ଭାରତରେ କାର୍ଯ୍ୟକାରୀ ହୋଇପାରିବ, ତେବେ ଭାରତରେ ପ୍ରଶାସନର ରୂପରେଖ ସଂପୂର୍ଣ୍ଣ ବଦଳିଯାଇ ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଅଧିକ ସୁଦୃଢ଼ କରିପାରିବ, ଏଥିରେ ସନ୍ଦେହ ନାହିଁ ।

ସୌଭାଗ୍ୟର କଥା ଯେ ଦକ୍ଷିଣ ଆଫ୍ରିକା ରାଷ୍ଟ୍ର ତାହାର ସମ୍ବିଧାନରେ ସୂଚନା ଅଧିକାର ପ୍ରାପ୍ତି ଆଇନ - ୨୦୦୦କୁ ଅନ୍ତର୍ଭୁକ୍ତ କରିଛନ୍ତି (Promotion to Access to Information Act, 2000) । ୧୯୬୬ରେ ଯୁକ୍ତରାଷ୍ଟ୍ର ଆମେରିକା 'ସୂଚନାଗତ ସ୍ୱାଧୀନତା ଆଇନ' ପ୍ରଣୟନ କରି ଗଣତାନ୍ତ୍ରିକ ପରମ୍ପରାରେ ଅବଶ୍ୟ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ସୃଷ୍ଟି କରିଥିଲା । ପୁଣି ସେହି ଆଇନଟିକୁ ଗତିଶୀଳ କରିବାର ଲକ୍ଷ୍ୟ ନେଇ ଯୁକ୍ତରାଷ୍ଟ୍ର ଆମେରିକା ସେହି ଆଇନର ସଂଶୋଧନ ୧୯୭୪ ମସିହାରେ କରିଥିଲା, ଯାହାକି ୧୯୭୫ ମସିହା ଫେବୃଆରୀ ପହିଲାରୁ ସେଠାରେ କାର୍ଯ୍ୟକାରୀ ହୋଇଥିଲା ।

ମୁକ୍ତବୃତ୍ତ ସାମ୍ବାଦିକ
ଘର ନଂ- ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨

# ଆଦିବାସୀ ଛାତ୍ରଛାତ୍ରୀମାନଙ୍କୁ ଆବାସିକ ବୃତ୍ତି ପ୍ରଦାନ

ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଦ୍ୱାରା ପରିଚାଳିତ ରାଜ୍ୟର ୩୦ ଗୋଟି ବିଦ୍ୟାଳୟଗୁଡ଼ିକରେ ଅଧ୍ୟୟନ କରୁଥିବା ଆଦିବାସୀ ଛାତ୍ରଛାତ୍ରୀମାନଙ୍କ ପାଇଁ ସରକାର ଅତିରିକ୍ତ ୬ କୋଟି ୬୯ ଲକ୍ଷ ୬୯ ହଜାର ଟଙ୍କା ଆବାସିକ ବୃତ୍ତି ଆକାରରେ ମଂଜୁର କରିଛନ୍ତି । କେବଳ ପ୍ରାକ୍-ମେଟ୍ରିକ୍ (ଷଷ୍ଠରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ) ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀମାନେ ପୂର୍ବରୁ ବାକି ରହିଯାଇଥିବା ଏହି ଆବାସିକ ବୃତ୍ତି ପାଇବାର ସୁଯୋଗ ପାଇବେ । ଏଥିପୂର୍ବରୁ ମଧ୍ୟ ଅନୁସୂଚିତ ଜାତି ଓ ଜନଜାତି ବିଭାଗ ଦ୍ୱାରା ପରିଚାଳିତ ଆବାସିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ସମସ୍ତ ଛାତ୍ରବୃତ୍ତି ପୂର୍ଣ୍ଣଭାବେ ମଂଜୁର କରାଯାଇଥିଲା ।

ରାଜ୍ୟର ୩୦ ଗୋଟି ଜିଲ୍ଲା ମଧ୍ୟରୁ ଅନୁଗୁଳ ଜିଲ୍ଲାକୁ ୨୧ ଲକ୍ଷ, ବାଲେଶ୍ୱର ଜିଲ୍ଲାକୁ ୪୦ ଲକ୍ଷ ୨୧ ହଜାର, ବରଗଡ଼ ଜିଲ୍ଲାକୁ ୫ ଲକ୍ଷ ୩୩ ହଜାର, ବୌଦ୍ଧ ଜିଲ୍ଲାକୁ ୫୩ ହଜାର, ଢେଙ୍କାନାଳ ଜିଲ୍ଲାକୁ ୪ ଲକ୍ଷ ୬୩ ହଜାର, ଦେବଗଡ଼ ଜିଲ୍ଲାକୁ ୫୪ ଲକ୍ଷ ୩ ହଜାର, ଗଜପତି ଜିଲ୍ଲାକୁ ୯ ଲକ୍ଷ ୪୮ ହଜାର, ଗଂଜାମ ଜିଲ୍ଲାକୁ ୨୦ ଲକ୍ଷ ୪୮ ହଜାର, ଜଗତସିଂହପୁର ଜିଲ୍ଲାକୁ ୭୩ ହଜାର, ଯାଜପୁର ଜିଲ୍ଲାକୁ ୪ ଲକ୍ଷ ୧ ହଜାର, ଝାରସୁଗୁଡ଼ା ଜିଲ୍ଲାକୁ ୨ ଲକ୍ଷ ୮୯ ହଜାର, କେଉଁଝର ଜିଲ୍ଲାକୁ ୪୯ ଲକ୍ଷ ୯୬ ହଜାର, କେନ୍ଦ୍ରାପଡ଼ା ଜିଲ୍ଲାକୁ ୧ ଲକ୍ଷ ୧୩ ହଜାର, ଖୋର୍ଦ୍ଧା ଜିଲ୍ଲାକୁ ୫୯ ହଜାର, ମୟୂରଭଂଜ ଜିଲ୍ଲାକୁ ୩୯.୭୩ ଲକ୍ଷ, ନୟାଗଡ଼ ଜିଲ୍ଲାକୁ ୧ ଲକ୍ଷ ୭୨ ହଜାର, ଫୁଲବାଣୀ ଜିଲ୍ଲାକୁ ୩ ଲକ୍ଷ ଏକ ହଜାର, ପୁରୀ ଜିଲ୍ଲାକୁ ୩ ଲକ୍ଷ ୭୬ ହଜାର, ସମ୍ବଲପୁର ଜିଲ୍ଲାକୁ ୪୫ ଲକ୍ଷ ୮୧ ହଜାର, ସୁନ୍ଦରଗଡ଼ ଜିଲ୍ଲାକୁ ୧୨୮.୨୨ ଲକ୍ଷ, ରାୟଗଡ଼ା ଜିଲ୍ଲାକୁ ୧୦ ଲକ୍ଷ ୭୮ ହଜାର, କୋରାପୁଟ ଜିଲ୍ଲାକୁ ୫୪ ଲକ୍ଷ ୩୩ ହଜାର, ମାଲକାନଗିରି ଜିଲ୍ଲାକୁ ୧୧୦.୮୮ ଲକ୍ଷ, ନବରଂଗପୁର ଜିଲ୍ଲାକୁ ୩୪.୫୧ ଲକ୍ଷ, ବଲାଙ୍ଗୀର ଜିଲ୍ଲାକୁ ୨ ଲକ୍ଷ ୨ ହଜାର, ସୋନପୁର ଜିଲ୍ଲାକୁ ୭ ଲକ୍ଷ ୫୨ ହଜାର, କଳାହାଣ୍ଡି ଜିଲ୍ଲାକୁ ୬ ଲକ୍ଷ ୮୧ ହଜାର, ନୂଆପଡ଼ା ଜିଲ୍ଲାକୁ ୪ ଲକ୍ଷ ୬୫ ହଜାର ଟଙ୍କା ମଂଜୁର କରିଛନ୍ତି ।

ଏଠାରେ ଉଲ୍ଲେଖ କରାଯାଇପାରେ ଛାତ୍ରଛାତ୍ରୀମାନଙ୍କ ବୃତ୍ତି ନିମିତ୍ତ ବାର୍ଷିକ ବ୍ୟୟ ମଂଜୁରୀ ସହ ଆବଶ୍ୟକୀୟ ମୁତାବକ ସରକାର ଆଦିବାସୀ ଜାତି ଓ ଜନଜାତି ଛାତ୍ରଛାତ୍ରୀମାନଙ୍କ ପାଇଁ ଅତିରିକ୍ତ ବ୍ୟୟବରାଦ ଭାବରେ ଉପରୋକ୍ତ ରାଶି ମଂଜୁର କରିଛନ୍ତି । ଅର୍ଥ ବିଭାଗର ମଂଜୁରୀ କ୍ରମେ ଏ କ୍ଷେତ୍ରରେ ଦୁଇ ମାସର ଅଗ୍ରୀମ ଆବାସିକ ଛାତ୍ରବୃତ୍ତି ମଧ୍ୟ ପ୍ରଦାନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି ଯେପରି କୌଣସି ବର୍ଷ ଏଭଳି ବୃତ୍ତି ବାକିଆ ରହିବ ନାହିଁ ।

# ସୂଚନା ଅଧିକାର - ଏକ ବଳିଷ୍ଠ ପଦକ୍ଷେପ

ଇନ୍ଦୁଭୂଷଣ କର

**ବି**ଶ୍ୱଦରବାରରେ ଭାରତର ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ମଧ୍ୟରେ ଗଣତାନ୍ତ୍ରିକ ସମାଜବାଦ ଜୟଯାତ୍ରାର ସୁନାମ ରହିଛି । ସାମାଜିକ ବୈଷମ୍ୟ ଓ ଉଗ୍ର ଜାତିପ୍ରଥାର ଦୋଷ-ଦୁର୍ବଳତା ସତ୍ତ୍ୱେ, ଭାରତର ସମନ୍ୱିତ ସଂସ୍କୃତି (composit culture)ର ମୂଲ୍ୟବୋଧ-ବିବିଧତା ମଧ୍ୟରେ ଐକ୍ୟଭାବ ଭାରତୀୟମାନଙ୍କର ଏକ ବିଶେଷ ଅନନ୍ୟ ପରିଚିତି ରହିଛି । ଭାରତୀୟ ସଂସ୍କୃତିର ଆଧ୍ୟାତ୍ମବାଦ, ଯୋଗ ଓ ଏକବିଂଶ ଶତାବ୍ଦୀର ଭାରତୀୟ ବୈଜ୍ଞାନିକମାନଙ୍କ, ସୂଚନା ବୈଷୟିକ ଜ୍ଞାନ-କୌଶଳରେ ଅଭୂତପୂର୍ବ ପାରଦର୍ଶିତା, ବିଶ୍ୱଦରବାରରେ ଏହି ଭାରତୀୟତା (Indians)କୁ ଏକ ନୂତନ ଆତ୍ମ-ପରିଚିତି (Identity) ଓ ସମ୍ମାନ ଆଣି ଦେଇଛି ।

ସ୍ୱାଧୀନତାର ଦୀର୍ଘ ୫୮ ବର୍ଷ ପରେ ଭାରତର ଗଣତନ୍ତ୍ରର ରଥଚକ୍ର ନୂତନ ପରୀକ୍ଷାନିରୀକ୍ଷା ମଧ୍ୟରେ ଆଗକୁ ମାଡ଼ି ଚାଲିଛି ସତ କିନ୍ତୁ ଯେଉଁ କେତେଗୁଡ଼ିଏ ପ୍ରତିବନ୍ଧକ ଏହି ପ୍ରଗତିର ରଥଚକକୁ ଟାଣି ଧରିଛି-ସେଗୁଡ଼ିକ ହେଲା - (୧) ଦୁର୍ନୀତି, (୨) ଅମଲାତାନ୍ତ୍ରିକ ଉଦାସୀନତା, (୩) ରାଜନୀତିର ଅପରାଧୀକରଣ ।

ଏହି ଗଣତାନ୍ତ୍ରିକ ଶାସନର ସାଫଲ୍ୟ ପାଇଁ ଏହିସବୁ ପ୍ରତିବନ୍ଧକଗୁଡ଼ିକୁ ଦୂର କରିବାକୁ ହେଲେ - ସୂଚନା ଅଧିକାରର ପ୍ରଚଳନ ଏକାନ୍ତ ଆବଶ୍ୟକ । ଏହି ସତ୍ୟକୁ ଉପଲବ୍ଧି କରି କେତେକ ସାମ୍ବାଦିକ ସମାଜ ସଂସ୍କାରକ ଓ ରାଜନୈତିକ ବ୍ୟକ୍ତିମାନେ ଗତ ଦଶନ୍ଧିରେ ଏହି ପ୍ରକାର ସୂଚନା ଅଧିକାର ଆଇନର ପ୍ରବର୍ତ୍ତନ ପାଇଁ ଦାବି କରି ଆସୁଥିଲେ । ଅରୁଣା ରାୟଙ୍କ ଭଳି ଜଣେ ଏକନିଷ୍ଠ ସମାଜସେବୀଙ୍କ ନେତୃତ୍ୱରେ National Campaign of the Freedom of Information ନାମରେ ଏକ ବଳିଷ୍ଠ ସ୍ୱେଚ୍ଛାସେବୀ ସଂଗଠନ ଏହି ସୂଚନା ଅଧିକାର ଆଇନ ପ୍ରଚଳନ ପାଇଁ ଆନ୍ଦୋଳନ କଲେ । ଫଳରେ ୨୦୦୦ ମସିହା, ଜୁଲାଇ ୨୫ ତାରିଖରେ ସୂଚନା ଅଧିକାର ଆଇନ ଲୋକସଭାରେ ଆଗତ ହେଲା ଓ ଶେଷରେ ୨୦୦୨ ମସିହାରେ 'ସୂଚନା ଅଧିକାର ଆଇନ ୨୦୦୨'ରେ ପରିଣତ ହେଲା । କିନ୍ତୁ ଏହି ୨୦୦୨ ସୂଚନା ଅଧିକାର ଆଇନରେ ଅନେକ ଦୋଷତ୍ରୁଟି ରହିଲା । ଫଳରେ ଏହି ସୂଚନା ଅଧିକାର ଦ୍ୱାରା ସାଧାରଣ ଜନତା ଉପକୃତ ହୋଇ ନପାରିବାରୁ ପୁଣି ଏହି ସୂଚନା ଅଧିକାର ଆଇନକୁ ସଂଶୋଧନ କରି ଦ୍ୱିତୀୟ ଥର ଲୋକସଭାରେ ୨୦୦୫ ମସିହାରେ ଆଗତ ହେଲା ଓ ଶେଷରେ ସୂଚନା ଅଧିକାର ଆଇନ-୨୦୦୫ ସ୍ୱତନ୍ତ୍ର ମୌଳିକ ଅଧିକାରର ମାନ୍ୟତା ପାଇଲା । ସୁଖର କଥା - ଏହି ଆଇନ ଭାରତରେ ଅଗଷ୍ଟ ୧୨, ୨୦୦୫ ତାରିଖରୁ ପ୍ରବର୍ତ୍ତିତ ହେଲା । ଆମ ଓଡ଼ିଶା ପ୍ରଦେଶରେ ମଧ୍ୟ ଏହି ସୂଚନା ଅଧିକାର ଆଇନ-୨୦୦୫, ଗତ ୨୦୦୫ ଅକ୍ଟୋବର ୧୨ ତାରିଖରୁ ପ୍ରବର୍ତ୍ତିତ ହୋଇଅଛି ।

ଏହି ଆଇନ ପ୍ରଚଳିତ ହେବାଦ୍ୱାରା ସାଧାରଣ ନାଗରିକମାନେ ଏକ ମୌଳିକ ଅଧିକାରର ଅଧିକାରୀ ହେଲେ । ସବୁ ସଚେତନ ନାଗରିକମାନେ ଏହି ଆଇନର ଆଭିମୁଖ୍ୟ ଓ ଏହାର କାର୍ଯ୍ୟକାରିତା ସମ୍ପର୍କରେ ଜାଣିବା ଉଚିତ ।

**ସୂଚନା ଅଧିକାର ଆଇନର ଆଭିମୁଖ୍ୟ**

ଗଣତନ୍ତ୍ର ଶାସନରେ ସୂଚନା ଅଧିକାର ଆଇନ-୨୦୦୫ ଏକ ବଳିଷ୍ଠ ପଦକ୍ଷେପ । ସରକାରୀ ବିଭାଗର ସମସ୍ତ ପ୍ରକଳ୍ପ, ସମସ୍ତ ଉନ୍ନୟନ କାର୍ଯ୍ୟ ପ୍ରଣାଳୀ, ନଥିଗୁଡ଼ିକୁ ଜନସାଧାରଣ ଦରଖାସ୍ତ କରି ପାଇପାରିବେ । ତାହାର ଅର୍ଥ ସରକାରଙ୍କ ଦ୍ୱାରା ସାଧାରଣ ନାଗରିକମାନଙ୍କ ପାଇଁ ଉନ୍ମୁକ୍ତ ହେଲା । ଆଗରୁ ନାଲିଫିତା ଓ ସରକାରୀ-ଅମଲାତନ୍ତ୍ରର ଉଦାସୀନତା ଜରୁରୀ ତଥ୍ୟ ମିଳିବାର ପ୍ରତିବନ୍ଧକ ଥିଲା । ଏହି ଦୁଇଟି ପ୍ରତିବନ୍ଧକ ଦୂର କରିବା - ଏହି ବହୁ ଆକାଂକ୍ଷିତ ସୂଚନା ଅଧିକାର-୨୦୦୫ର ମୁଖ୍ୟ ଆଭିମୁଖ୍ୟ । ଗଣତାନ୍ତ୍ରିକ ଶାସନରେ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱର ପ୍ରଚଳନ, ଏହି ନୂତନ ସୂଚନା ଅଧିକାର ଆଇନର ମୂଳଲକ୍ଷ୍ୟ ଅଟେ । ଏହି ସୂଚନା ଅଧିକାର ଆଇନ ୨୦୦୫ (The Right to Information Act 2005)ର ମୁଖବନ୍ଧରେ ସ୍ପଷ୍ଟ ଭାବରେ ଲିପିବଦ୍ଧ ହୋଇଛି ଦୁଇଟି ଆଭିମୁଖ୍ୟ, ଯଥା- (୧) ସ୍ୱଚ୍ଛତା ଓ (୨) ଉତ୍ତରଦାୟିତ୍ୱ । ଏହି ଆଇନର-ପ୍ରଥମ ପରିଚ୍ଛେଦରେ ଏହି ଆଇନର ଆଭିମୁଖ୍ୟକୁ ସୁସ୍ପଷ୍ଟ କରି ଲେଖାଯାଇଛି ।

'An act to provide for setting out the practical regime of Right to Information for citezens to secure access to information under the control of public authorities in order to

promote transparancy and accountability in the working of every public authority, the constitution of a Central Information commission and State Information Commissions and for matters connected herewith or incidental thereto.'

**ସୂଚନା ଅଧିକାର ସଂଜ୍ଞା ଓ ଏହାର ବାସ୍ତବ ରୂପାୟନର ରୂପରେଖ -**

ସୂଚନା ଅଧିକାର (Right to Information) ଅର୍ଥ ହେଉଛି - ପ୍ରତ୍ୟେକ ଭାରତୀୟ ନାଗରିକ ଯେକୌଣସି ସରକାରୀ ବିଭାଗରୁ ସୂଚନା ହାସଲ କରିବାର ମୌଳିକ ଅଧିକାର । ଉକ୍ତ ସୂଚନା ଅଧିକାର-୨୦୦୫ ଆଇନାନୁସାରେ ଜଣେ ନାଗରିକ ନିର୍ଦ୍ଧାରିତ ଫର୍ମରେ ଆବେଦନ କଲେ ଏକ ମାସ ମଧ୍ୟରେ ସରକାରୀ ରେକର୍ଡ଼ ଫାଇଲ ନଥିପତ୍ର ମେମୋ, ମତାମତ ପରାମର୍ଶ, ସର୍କୁଲାର, ଆଦେଶ, ଚୁକ୍ତି ପ୍ରକଳ୍ପର ଅଗ୍ରଗତି, ନମୁନା, ତଥ୍ୟ ପ୍ରଭୃତି ଛାପା ଓ ବୈଦ୍ୟୁତିକ ଡିସ୍‌କେଟ୍, ଫ୍ଲପି, ଟେପ୍ ଓ ଭିଡ଼ିଓ କ୍ୟାସେଟ୍ ଭାବରେ ଚାହୁଁଥିବା ସମସ୍ତ ସରକାରୀ ତଥ୍ୟଗୁଡ଼ିକ ପାଇପାରିବ । ଏହି ତଥ୍ୟ ପାଇବା ପାଇଁ ଆବେଦନକାରୀଙ୍କୁ ଅଳ୍ପ କେତେକ ଶୁଳ୍କ ଦେବାକୁ ପଡ଼ିବାର ନିୟମାବଳୀ ପ୍ରସ୍ତୁତ ହୋଇଅଛି ।

ଏହି ସୂଚନା ଅଧିକାର ଆଇନ ୨୪(୧) ଧାରା ଅନୁସାରେ ଆଇନର ଦ୍ୱିତୀୟ ସିଡ୍ୟୁଲ (The second schedule)ରେ ବର୍ଣ୍ଣିତ ୧୮ଟି ସଂସ୍ଥାର ତଥ୍ୟଗୁଡ଼ିକୁ ଦେଶର ଗୋଇନ୍ଦା ଓ ସୁରକ୍ଷା ଦୃଷ୍ଟିରୁ ସୂଚନା ଦେବାକୁ ନିଷିଦ୍ଧ କରାଯାଇଛି । ଏହିସବୁ ସଂସ୍ଥାମାନଙ୍କ ମଧ୍ୟରେ ଦେଶରକ୍ଷା ଓ ଘରୋଇ ବିଭାଗ ଅଧୀନରେ ଥିବା ରଅ (Research and Analysis Wing of the Cabinet Secretariat) ଡାଇରେକ୍ଟରେଟ ଅଫ୍ ରେଭିନିଉ ଇଣ୍ଟେଲିଜେନ୍ସ ଏଭିଏସନ ରିସର୍ଚ୍ଚ ସେଣ୍ଟର୍ ବୋର୍ଡ଼ର ସିକ୍ୟୁରିଟି ଫୋର୍ସ ସ୍ପେସିୟାଲ ଫ୍ରଣ୍ଟିଆର ଫୋର୍ସ ଇତ୍ୟାଦି ସଂସ୍ଥାଗୁଡ଼ିକ ପ୍ରମୁଖ ଅଟେ ।

ସୂଚନା ଅଧିକାର ଆଇନର ବାସ୍ତବ ରୂପାୟନ ଓ ସୁପରିଚାଳନା ପାଇଁ କେନ୍ଦ୍ରରେ ଗୋଟିଏ ମୁଖ୍ୟ ସଂସ୍ଥା ଗଠିତ ହୋଇଛି - ତାହାର ନାମ Central Information Commission, ଏହି କମିଶନରେ ଜଣେ ମୁଖ୍ୟ ସୂଚନା କମିଶନର ରହିବେ ଓ ତାଙ୍କ ସାଙ୍ଗକୁ କେତେକ ମନୋନୀତ ସଭ୍ୟ ରହିବେ । ସେହି ସଭ୍ୟମାନଙ୍କ ସଂଖ୍ୟା ୧୦ରୁ ଅଧିକ ହେବ ନାହିଁ । ଏହି କମିଶନର ଚେୟାର ପରସନ (Chair Person) ରହିବେ ଭାରତର ପ୍ରଧାନମନ୍ତ୍ରୀ । ଏହି କମିଶନର ଅନ୍ୟତମ ସଭ୍ୟ ରହିବେ - ଲୋକସଭାର ବିରୋଧୀ ଦଳର ନେତା ଓ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ମନୋନୀତ ଜଣେ କେନ୍ଦ୍ର ମନ୍ତ୍ରିମଣ୍ଡଳର କ୍ୟାବିନେଟ୍ ମନ୍ତ୍ରୀ ।

ସେହିପରି ପ୍ରଦେଶମାନଙ୍କରେ ମଧ୍ୟ ରାଜ୍ୟ ସୂଚନା କମିଶନ ଗଠିତ ହୋଇଛି । ଏହି ରାଜ୍ୟ ସୂଚନା କମିଶନରେ ସେହିପରି ଜଣେ, ରାଜ୍ୟ ମୁଖ୍ୟ ସୂଚନା କମିଶନର ରହିବେ । ତାଙ୍କ ସହିତ କେତେକ ମନୋନୀତ ସଭ୍ୟ ରହିବେ, ଯେଉଁମାନଙ୍କ ସଂଖ୍ୟା ୧୦ରୁ ଅଧିକ ହେବ ନାହିଁ । ରାଜ୍ୟର ମୁଖ୍ୟମନ୍ତ୍ରୀ ଏହି ରାଜ୍ୟ ସୂଚନା କମିଶନର ଅଧ୍ୟକ୍ଷ ରହିବେ । ଏହି କମିଶନରେ ରାଜ୍ୟ ବିଧାନସଭାର ବିରୋଧୀ ଦଳର ନେତା ସଭ୍ୟ ରହିବେ ଏବଂ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ମନୋନୀତ ଜଣେ କ୍ୟାବିନେଟ୍ ମନ୍ତ୍ରୀ ରହିବେ । ରାଜ୍ୟ ମୁଖ୍ୟ ସୂଚନା କମିଶନରଙ୍କୁ ମହାମାନ୍ୟ ରାଜ୍ୟପାଳ ନିଯୁକ୍ତି ଦେବାର ନିୟମ ରହିଛି । ଆମ ଓଡ଼ିଶା ପ୍ରଦେଶରେ ଏହି ଅନୁସାରେ ରାଜ୍ୟ ସୂଚନା କମିଶନ ଗଠିତ ହୋଇଅଛି ଓ ଜଣେ ମୁଖ୍ୟ ସୂଚନା କମିଶନର ନିଯୁକ୍ତି ପାଇଛନ୍ତି । ପ୍ରତି ଜିଲ୍ଲାରେ ମଧ୍ୟ ଜିଲ୍ଲା ସୂଚନା ଅଧିକାରୀ ରହିଛନ୍ତି ।

ସୁଖର କଥା ଯେ, ଏହି ସୂଚନା ଅଧିକାର ଆଇନ ପ୍ରଚଳନ ହେବାପରେ ସରକାରୀ ବିଭାଗରେ କର୍ମ ତତ୍ପରତା ବୃଦ୍ଧି ପାଇଛି ଓ ଅମଲାତନ୍ତ୍ରର ଅଧିକାରୀମାନେ ଅଧିକ ସତର୍କ ଓ ସଚେତନ ହୋଇଛନ୍ତି ବୋଲି ହୃଦବୋଧ ହେଉଛି । ରାଜ୍ୟ ପ୍ରଶାସନରେ ସ୍ୱଚ୍ଛତା ଓ ଦୁର୍ନୀତିକୁ ରୋକିବାରେ ଏହି ଆଇନ୍ ଅଧିକ ସହାୟକ ହୋଇଅଛି । ଗଣ-ମାଧ୍ୟମର ସାମ୍ବାଦିକମାନେ ମଧ୍ୟ ଅଧିକ ନିର୍ଭରଯୋଗ୍ୟ ତଥ୍ୟ ପାଇବାକୁ ସକ୍ଷମ ହୋଇ ଜନସାଧାରଣଙ୍କ ମନରେ ଅଧିକ ସାମାଜିକ ସଚେତନତା ସୃଷ୍ଟି କରିବାର ସୁଯୋଗ ପାଇପାରିଲେ । କିନ୍ତୁ କେତେକ ସମାଜତତ୍ତ୍ୱବିତ୍‌ମାନେ ଅଭିମତ ପ୍ରକାଶ କରୁଛନ୍ତି ଯେ, କେବଳ ସୂଚନା ଅଧିକାର ଆଇନ ପ୍ରଣୟନ ଯଥେଷ୍ଟ ନୁହେଁ । ଏହି ଆଇନର ସଫଳ ରୂପାୟନ ପାଇଁ ସାଧାରଣ ନାଗରିକମାନଙ୍କ ମଧ୍ୟରେ ଅଧିକ ଜନ-ସଚେତନତା ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ତୃଣମୂଳ କ୍ଷେତ୍ରରେ ପ୍ରଶାସନ କେତେ ସ୍ୱଚ୍ଛ, କେତେ ଦୁର୍ନୀତିମୁକ୍ତ - ଏହି କଥା ଜାଣିବା ପାଇଁ ସମଷ୍ଟିଗତ ସଚେତନତାର ଆବଶ୍ୟକତା ରହିଛି । ଇଂରାଜୀରେ ଏକ ଆପ୍ତବାକ୍ୟ ରହିଛି - 'Eternal Vigilance is the price of liberty' - ଏହା ସତ୍ୟ ଯେ, ସ୍ୱାଧୀନତାର ସ୍ୱାଦ ଉପଭୋଗ କରିବାକୁ ହେଲେ ଜନତା ଜାଗ୍ରତ ପ୍ରହରୀ ଭଳି କାର୍ଯ୍ୟ କରିବା ଉଚିତ । ଏଥିପାଇଁ ଜନସାଧାରଣଙ୍କ ମଧ୍ୟରେ ଗଣତନ୍ତ୍ର ଶାସନର ସାଫଲ୍ୟ ସୂଚନା ଅଧିକାରର ସଫଳ ରୂପାୟନ ଉପରେ ନିର୍ଭର କରେ ବୋଲି ପ୍ରଶିକ୍ଷଣର ବ୍ୟବସ୍ଥା ହେବା ଉଚିତ ବୋଲି ମୁଁ ମନେ କରେ । ଏ ଦିଗରେ ସରକାରୀ ସ୍ତରରେ ଓ ବେସରକାରୀ ସ୍ତରରେ ସୂଚନା ଅଧିକାର ପ୍ରଶିକ୍ଷଣ କର୍ମଶାଳା ସୁସଂଗଠିତ ହେବା ଏକାନ୍ତ ଆବଶ୍ୟକ ବୋଲି ମୁଁ ଅନୁଭବ କରୁଅଛି । ଏତଦ୍‌ବ୍ୟତୀତ ସୂଚନା ଅଧିକାର ପାଇଁ ଯେଉଁ ସବୁ ଆବେଦନପତ୍ର କରାଯାଉଛି, ସେଗୁଡ଼ିକ ପାଇଁ ଶୁଳ୍କ (ଫି)ର ପରିମାଣ ମଧ୍ୟ କେତେକ କ୍ଷେତ୍ରରେ ହ୍ରାସ କରିବା ପାଇଁ ଚିନ୍ତା ହେବା ଉଚିତ, କାରଣ ଏହାଦ୍ୱାରା ସାଧାରଣ ନାଗରିକମାନଙ୍କ ମନରେ ଅଧିକ ଆଗ୍ରହ ସୃଷ୍ଟି ହୋଇପାରିବ ଓ ସୂଚନା ଅଧିକାର ଆଇନର ପ୍ରଚଳନ ଦ୍ୱାରା ଆମ ଓଡ଼ିଶାରେ ଗଣତାନ୍ତ୍ରିକ ପ୍ରଶାସନର ଉନ୍ନତି ହୋଇପାରିବ - ଏହା ନିଃସନ୍ଦେହରେ କୁହାଯାଇପାରେ ।

ପୂର୍ବତନ ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ
୧୫୯୫, ଶ୍ରଦ୍ଧା ନିବାସ, ଭକ୍ତମଧୁ ନଗର
ଭୁବନେଶ୍ୱର-୩୦

# ସୂଚନା ଅଧିକାର ଆଇନ - ୨୦୦୫

## ଏକ ବିହଙ୍ଗାବଲୋକନ

ଅମିତା ପାତ୍ର

ଭାରତୀୟ ସମ୍ବିଧାନ ପୃଥିବୀର ସର୍ବବୃହତ୍ତମ ସମ୍ବିଧାନ, ଯେଉଁଥିରେ କି ୩୯୫ଟି ଅନୁଚ୍ଛେଦ ଓ ୧୦ଟି ଅନୁସୂଚୀ ରହିଛି । ଏହାର ତୃତୀୟ ଭାଗରେ ଧାରା ୧୨ରୁ ୩୫ ମଧ୍ୟରେ ପ୍ରତ୍ୟେକ ନାଗରିକକୁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ପ୍ରଦତ୍ତ ଛଅ ଗୋଟି ମୌଳିକ ଅଧିକାର ସଂପର୍କରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ନାଗରିକ ଅଧିକାର ଗଣତନ୍ତ୍ରର ମୂଳଭିତ୍ତି । ଏହି ଅଧିକାର ଫଳରେ ବ୍ୟକ୍ତି ବିଶେଷଙ୍କୁ ଯେଉଁ ସ୍ୱାଧୀନତା ମିଳେ, ସେଥିରେ ସେ ସର୍ବବିଧ ଉନ୍ନତି ପାଇଁ ଚେଷ୍ଟା କରେ । ମୌଳିକ ଅଧିକାର ଯେତେ ସୁରକ୍ଷିତ ହେଲେ ମଧ୍ୟ ନିରଙ୍କୁଶ ନୁହେଁ । ଧାରା ୧୯ରେ ଥିବା 'ସ୍ୱାଧୀନତାର ଅଧିକାର'ରେ ମଧ୍ୟ କେତେକ ଯୁକ୍ତିସଙ୍ଗତ ପ୍ରତିବନ୍ଧକ ଆରୋପ କରାଯାଇଛି, ଯାହାଫଳରେ କି ସ୍ୱାଧୀନତାର ଦ୍ୱାହି ଦେଇ କୌଣସି ନାଗରିକ ଦେଶର ସାର୍ବଭୌମତ୍ୱ, ସଂହତି, ନିରାପତ୍ତା, ଗୁପ୍ତ ବୈଦେଶିକ ବ୍ୟାପାର ଆଦିରେ ହସ୍ତକ୍ଷେପ କରିପାରିବ ନାହିଁ । ମୌଳିକ ଅଧିକାର ସହିତ ସମ୍ବିଧାନର ଚତୁର୍ଥ ଭାଗରେ ଧାରା ୩୬ରୁ ୫୧ ମଧ୍ୟରେ ରାଷ୍ଟ୍ରୀୟ ନିର୍ଦ୍ଦେଶମୂଳକ ନୀତିମାନ ଉଲ୍ଲେଖ ରହିଛି । ଏହି ନୀତିଗୁଡ଼ିକ ମୁଖ୍ୟତଃ ସମାଜବାଦୀ, ଗାନ୍ଧିବାଦୀ ଓ ଉଦାରବାଦୀ ଚିନ୍ତାଧାରା ବା ଆଦର୍ଶ ଉପରେ ପର୍ଯ୍ୟବସିତ । ତେବେ ନୀତିଗୁଡ଼ିକୁ ଆବଶ୍ୟକତା ଅନୁସାରେ ରାଷ୍ଟ୍ର ଭବିଷ୍ୟତରେ ଅନୁସରଣ କରିବ ବୋଲି ସମ୍ବିଧାନ ପ୍ରଣେତାମାନେ ଆଶା ପ୍ରକଟ କରିଥିଲେ । ଏହି ନୀତି ମଧ୍ୟରେ ଇଙ୍ଗିତପୂର୍ଣ୍ଣ ଭାବେ ରହିଥିବା ଓ ମୌଳିକ ଅଧିକାରରେ ସ୍ଥାନ ପାଇ ନଥିବା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଲା 'ନାଗରିକଙ୍କ ସୂଚନାର ଅଧିକାର' ବା 'ତଥ୍ୟ ଜାଣିବାର ଅଧିକାର' । ଦୀର୍ଘ ପ୍ରତୀକ୍ଷା ପରେ ସାଂପ୍ରତିକ ପରିସ୍ଥିତିରେ ସୂଚନାର ଅଧିକାରର ଗୁରୁତ୍ୱକୁ ବିଶେଷ ଭାବରେ ଉପଲବ୍ଧ କରି ଏହାକୁ ଏକ ଆଇନ ରୂପେ କାର୍ଯ୍ୟକାରୀ କରିବାକୁ କେନ୍ଦ୍ର ସରକାର ନିର୍ଦ୍ଧାରଣ କଲେ ।

ସୂଚନା ଅଧିକାର ବିଲ୍, ଡିସେମ୍ବର ୨୦୦୪ରେ ସଂସଦ ଅଧିବେଶନରେ ଉପସ୍ଥାପିତ ହେବା ପରେ ମେ ୧୨ ତାରିଖ ୨୦୦୫ରେ ଗୃହୀତ ହୋଇଥିଲା ଓ ଜୁନ୍ ୧୫ ତାରିଖଦିନ ରାଷ୍ଟ୍ରପତି ଶ୍ରୀଯୁକ୍ତ ଅବଦୁଲ୍ କାଲାମଙ୍କ ଅନୁମୋଦନ ଲାଭ କରିଥିଲା । ଏହି କେନ୍ଦ୍ରୀୟ ଆଇନଟି ଚଳିତ ବର୍ଷ ଅକ୍ଟୋବର ୧୨ ତାରିଖରୁ ଜାମ୍ମୁ-କାଶ୍ମୀର ବ୍ୟତୀତ ଭାରତବର୍ଷର ସମସ୍ତ ରାଜ୍ୟରେ କାର୍ଯ୍ୟକାରୀ ହେଉଛି । ସୂଚନା ଅଧିକାର ଆଇନ : ୨୦୦୫ ହେଉଛି ଗତ ୨୦୦୨ ମସିହାରେ ସଂସଦରେ ଆଗତ କରାଯାଇଥିବା ତଥ୍ୟ ଜାଣିବାର ସ୍ୱାଧୀନତା ଆଇନ (ଯାହାକି ଆଦୌ କାର୍ଯ୍ୟକାରୀ କରାଯାଇନାହିଁ)ର ଏକ ନୂତନ କଳେବର ।

ସୂଚନା ଅଧିକାର ଆଇନ ପ୍ରଣୟନର ମୁଖ୍ୟ ଉଦ୍ଦେଶ୍ୟ ହେଲା ପ୍ରଶାସନରେ ସ୍ୱଚ୍ଛତା ଓ ଦାୟିତ୍ୱବୋଧତା ସୃଷ୍ଟି କରିବା । ସୂଚନା ଅଧିକାର ବଳରେ ସାଧାରଣ ଜନତା ସରକାରଙ୍କ କୌଣସି ନୀତି ନିର୍ଦ୍ଧାରଣ ବା ନିଷ୍ପତ୍ତିଗତ ତ୍ରୁଟି ସୁଧାରିବାରେ ସକ୍ରିୟ ଭାବେ ଅଂଶ ଗ୍ରହଣ କରିପାରିବେ ଓ ନିଜର ସ୍ୱଷ୍ଟମତ ବ୍ୟକ୍ତ କରିପାରିବେ । ଏହି ଆଇନ ଏକ ସଂବେଦନଶୀଳ ପ୍ରଶାସନ ଗଠନ କରିବା ସହ ପରିଚାଳନାଗତ ସମସ୍ୟା ଦୂର କରି ସରକାରଙ୍କୁ ଯୁକ୍ତିଯୁକ୍ତ ନିଷ୍ପତ୍ତି ଗ୍ରହଣ କରିବାରେ ସହାୟକ ହେବ । କେବଳ ସେତିକି ନୁହଁ, ଯୁଗ ଯୁଗ ଧରି ଅମଲାତନ୍ତ୍ର ମଧ୍ୟରେ ପୂରି ରହିଥିବା ଗୋପନୀୟତାର ସଂସ୍କୃତିରେ ଯବନିକା ପଡ଼ି ଏକ ସୁସ୍ଥ ଖୋଲାମେଲା ବାତାବରଣ ସୃଷ୍ଟି କରାଯାଇପାରିବ । ଏହି ଆଇନ ଏଭଳି ଏକ ଅମୋଘ ଅସ୍ତ୍ର ଯାହାକୁ ପ୍ରୟୋଗ କରି ଦୁର୍ନୀତି, ଭ୍ରଷ୍ଟାଚାର ଆଦିକୁ କିଛିକାଂଶରେ ହ୍ରାସ କରିବା ସଂଗେସଂଗେ ସାଧାରଣ ଜନତାଙ୍କ ସଶକ୍ତିକରଣ ମଧ୍ୟ କରିହେବ । ଆନ୍ତର୍ଜାତୀୟ ସ୍ତରରେ ଏହି ଅଧିକାରକୁ ବିଶେଷ ପ୍ରାଧାନ୍ୟ ଦେବା ଫଳରେ କ୍ରମଶଃ ଦେଶ ବିଦେଶରେ ସୂଚନା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଆଗ୍ରହ ପ୍ରକାଶ ପାଇଥିଲା । ପ୍ରଥମ ପର୍ଯ୍ୟାୟରେ ପ୍ରାୟ ୫୦ଟି ଦେଶ ଏହାକୁ ପ୍ରଣୟନ କରି ସାରିଛନ୍ତି ଓ ୨୫ଟି ଦେଶ ଏହାକୁ ପ୍ରଣୟନ କରିବାର ପ୍ରକ୍ରିୟାରତ । ଆମ ଦେଶରେ କେନ୍ଦ୍ର ସରକାରଙ୍କ ସହିତ ଆଠଗୋଟି ରାଜ୍ୟ ମଧ୍ୟ ସୂଚନା ଆଇନକୁ କାର୍ଯ୍ୟକାରୀ କରିସାରିଛନ୍ତି । କେନ୍ଦ୍ରୀୟ ଆଇନର ବ୍ୟବସ୍ଥା ଅନୁସାରେ ଯଦି ରାଜ୍ୟ ଆଇନ କେନ୍ଦ୍ରୀୟ ଆଇନର ବିରୁଦ୍ଧାଚରଣ କରୁଥିବ ତେବେ ସେ କ୍ଷେତ୍ରରେ କେନ୍ଦ୍ରୀୟ ଆଇନ ବଳବତ୍ତର ରହିବ ।

ଏହି ଆଇନର ପରିଧି ମଧ୍ୟରେ ସର୍ବସାଧାରଣ କର୍ତ୍ତୃପକ୍ଷ ଅର୍ଥାତ୍ ସମ୍ବିଧାନ, ସଂସଦ ବା ବିଧାନସଭା ଦ୍ୱାରା ପ୍ରଣୀତ ଆଇନରେ ଗଠିତ

ଯେକୌଣସି ସଂସ୍ଥା ବା ଅନୁଷ୍ଠାନ, କେନ୍ଦ୍ର ବା ରାଜ୍ୟ ସରକାରଙ୍କ ଦ୍ୱାରା ନିୟନ୍ତ୍ରିତ ସରକାରୀ କାର୍ଯ୍ୟାଳୟ ବା ସରକାରୀ ଉଦ୍ୟୋଗ ବା ସରକାରଙ୍କଠାରୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଆର୍ଥିକ ସହାୟତା / ଅନୁଦାନ ପ୍ରାପ୍ତ ଯେକୌଣସି ବେସରକାରୀ ସଂଗଠନ ଅନ୍ତର୍ଭୁକ୍ତ । ଏହି ଜନ କର୍ତ୍ତୃପକ୍ଷମାନେ ଆଇନ କାର୍ଯ୍ୟକାରୀ ହେବାର ୧୨୦ ଦିନ / ୪ ମାସ ଭିତରେ ସମସ୍ତ ତଥ୍ୟକୁ କ୍ରମାଙ୍କିତ କରି ସଜାଡ଼ି ରଖିବେ ଯାହା ଫଳରେ କୌଣସି ସାଧାରଣ ନାଗରିକଙ୍କୁ ସୂଚନା ଯୋଗାଇବା ସହଜସାଧ ହେବ । ସୂଚନାକୁ କାର୍ଯ୍ୟାଳୟମାନେ ଯଥାସାଧ କମ୍ପ୍ୟୁଟରୀକରଣ କରିବେ ଓ ୱେବସାଇଟ୍‌ରେ ଦେବେ । କେବଳ ତଥ୍ୟଗୁଡ଼ିକୁ ଥରକ ପାଇଁ ସଜାଡ଼ି ରଖିଲେ ହେବ ନାହିଁ, ପ୍ରତିବର୍ଷ ଏହି ପ୍ରକାଶନର ନବୀକରଣ କରାଯିବା ଜରୁରୀ । ଏତତ୍‌ବ୍ୟତୀତ ଯଦି ସେମାନଙ୍କ ସଂସ୍ଥା ଦ୍ୱାରା କୌଣସି ଜନସ୍ୱାର୍ଥ ଜଡ଼ିତ ଗୁରୁତ୍ୱପୂର୍ଣ୍ଣ ନୀତି ବା ନିଷ୍ପତ୍ତି ଗ୍ରହଣ କରାଯାଇଥାଏ ତେବେ ତାହା ମଧ୍ୟ ପ୍ରକାଶିତ କରିବେ । ଏହି ସମସ୍ତ ସୂଚନା ନିଜ ତରଫରୁ କିଭଳି ବ୍ୟାପକ ଭାବେ ସର୍ବନିମ୍ନ ଖର୍ଚ୍ଚରେ ଆଞ୍ଚଳିକ ଭାଷାରେ ନିୟମିତ ଭାବରେ ଜନସାଧାରଣଙ୍କ ପାଖରେ ପହଞ୍ଚିପାରିବ ସେଥିପାଇଁ ଦୃଷ୍ଟି ଦେବେ ।

ଏହି ଆଇନ ଅନୁସାରେ କେତୋଟି ଅତ୍ୟନ୍ତ ଜରୁରୀ ସୂଚନା ଯାହାର ପ୍ରକାଶ୍ୟରେ ରାଜ୍ୟ ବା ଦେଶର ସାର୍ବଭୌମତ୍ୱ, ଅଖଣ୍ଡତା, ସୁରକ୍ଷା, ଆଭ୍ୟନ୍ତରୀଣ ଆଇନ ଶୃଙ୍ଖଳା, ବୈଜ୍ଞାନିକ ତଥା ଅର୍ଥନୈତିକ ସ୍ୱାର୍ଥରେ ବାଧା ସୃଷ୍ଟି ହେବ ବା ଯାହା କୌଣସି ଅନୁସନ୍ଧାନରେ ଅନ୍ତରାୟ ସୃଷ୍ଟି କରୁଥିବ, ଡ୍ରାଫ୍ଟ ଫର୍ମ ଆକାରରେ ଥିବ ବା କୌଣସି ନ୍ୟାୟାଳୟର ବିଚାର ଅଧୀନସ୍ଥ ଥିବ ବା କୌଣସି ବ୍ୟକ୍ତିର ଅନ୍ତରଙ୍ଗତା, ମାନହାନି, ଅଶ୍ଳୀଳତା, ଅସଦାଚାର ବା ବ୍ୟବସାୟିକ କାର୍ଯ୍ୟଶୈଳୀ, ବୌଦ୍ଧିକ ଚିନ୍ତା ବିକାଶର ବାଧା ସୃଷ୍ଟି କରୁଥିବ, ତେବେ ସେଭଳି ତଥ୍ୟକୁ ଛାଡ଼ି ଅନ୍ୟ ସମସ୍ତ ତଥ୍ୟ ସାଧାରଣ ଜନତାଙ୍କ ଜାଣିବାର ଅଧିକାର ରହିଛି । ସୂଚନା ଅଧିକାର ଆଇନ ଅନୁସାରେ ପ୍ରତ୍ୟେକ ଜନ କର୍ତ୍ତୃପକ୍ଷ ନିଜ ସଂସ୍ଥାର ସଂଗଠନ, କାର୍ଯ୍ୟାବଳୀ, କାର୍ଯ୍ୟରତ ଅଧିକାରୀ ଓ କର୍ମଚାରୀମାନଙ୍କ ସମ୍ବନ୍ଧରେ ସୂଚନା, ସେମାନଙ୍କ ଦାୟିତ୍ୱ ଓ କ୍ଷମତା ସଂପର୍କରେ ସବିଶେଷ ବିବରଣୀ, ସଂସ୍ଥାରେ ନିଆଯାଉଥିବା ନିଷ୍ପତ୍ତି, କାର୍ଯ୍ୟ ତଦାରଖ ପାଇଁ ଥିବା ବ୍ୟବସ୍ଥା, କର୍ମକର୍ତ୍ତାଙ୍କ କାର୍ଯ୍ୟ ସଂପାଦନ ପାଇଁ ଥିବା ନିୟମ କାନୁନ, ନିର୍ଦ୍ଦେଶାବଳୀ, ପ୍ରୟୋଗବିଧି, ସଂସ୍ଥାଦ୍ୱାରା ନିର୍ଦ୍ଧାରଣ କରାଯାଉଥିବା କୌଣସି ନୀତିକୁ କାର୍ଯ୍ୟକାରୀ କରାଯିବାବେଳେ ସାଧାରଣ ନାଗରିକ ଯଦି କିଛି ପରାମର୍ଶ ବା ମତାମତ ଦେବାକୁ ଚାହାନ୍ତି ତେବେ ସେଥି ନିମନ୍ତେ କିଭଳି ବ୍ୟବସ୍ଥା ରହିଛି ତାହାର ଏକ ବିବରଣୀ, ସଂସ୍ଥା ସହ ଯଦି ଅନ୍ୟ କୌଣସି କମିଟି, ବୋର୍ଡ଼, କାଉନସିଲ ବା ଉପସଂସ୍ଥା ଜଡ଼ିତ ଅଛନ୍ତି, ସେମାନଙ୍କ ସମ୍ବନ୍ଧରେ ସଂପୂର୍ଣ୍ଣ ବିବରଣୀ ଯଥା- ସେଥିପାଇଁ ଉଦ୍ଦିଷ୍ଟ ବଜେଟ୍, କର୍ମଯୋଜନା, ବ୍ୟୟବରାଦ, ବ୍ୟୟିତ ଅର୍ଥର ବିବରଣୀ ସେହି ସଂସ୍ଥାର ଅଧିକାରୀ ଓ କର୍ମଚାରୀମାନଙ୍କ ମାସିକ ଦରମା ତଥା ଅନ୍ୟାନ୍ୟ ଭତ୍ତା, ସେମାନଙ୍କ ବୈଠକ ସର୍ବସାଧାରଣଙ୍କ ଯୋଗଦାନ ପାଇଁ ଉଦ୍ଦିଷ୍ଟ କି ନୁହେଁ, ସେହି ବୈଠକର ବିବରଣୀ ସାଧାରଣ ଲୋକ ଦେଖିପାରିବେ କି ନାହିଁ ସେ ସମ୍ବନ୍ଧରେ ବିବୃତ୍ତି, ସଂସ୍ଥା ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ସବ୍‌ସିଡ଼ିଯୁକ୍ତ ଯୋଜନାର କାର୍ଯ୍ୟ ପ୍ରଣାଳୀ, ହିତାଧିକାରୀ, ମଂଜୁରୀ ହୋଇଥିବା ବିଭିନ୍ନ ରିହାତି, ପରମିଟ୍, ପ୍ରାଧିକରଣ ସଂପର୍କରେ ତଥ୍ୟ, ସଂସ୍ଥାକୁ ବିଭିନ୍ନ ସୂତ୍ରରୁ ମିଳୁଥିବା ତଥ୍ୟାବଳୀ, ଯଦି ସଂସ୍ଥା ଅଧୀନରେ ସର୍ବସାଧାରଣଙ୍କ ନିମନ୍ତେ କୌଣସି ପାଠାଗାର ଥାଏ, ତେବେ ତା'ର କାର୍ଯ୍ୟ ନିର୍ଘଣ୍ଟ ତଥା ଅନ୍ୟାନ୍ୟ ସୁବିଧା-ସୁଯୋଗ ଓ ସର୍ବଶେଷରେ ସଂସ୍ଥା ପାଇଁ ଥିବା ସୂଚନା ଅଧିକାରୀଙ୍କ ନାମ, ଉପାଧି ଓ ଅନ୍ୟାନ୍ୟ ସବିଶେଷ ବିବରଣୀ ପୂରଣ କରି ରଖାଯିବ ।

ଉପରୋକ୍ତ ତଥ୍ୟରୁ ଯଦି କୌଣସି ସୂଚନା ପାଇବା ନିମନ୍ତେ ଜଣେ ନାଗରିକ ଇଚ୍ଛା କରନ୍ତି, ତେବେ ସେ ସଂପୃକ୍ତ କାର୍ଯ୍ୟାଳୟର ଜନସୂଚନା ଅଧିକାରୀଙ୍କୁ ଉଦ୍ଦିଷ୍ଟ ଫର୍ମରେ କେଉଁ ସୂଚନା ପାଇବାକୁ ଚାହୁଁଛନ୍ତି, ତାହା ସ୍ପଷ୍ଟ ଉଲ୍ଲେଖ କରି ଆବେଦନ କରିପାରିବେ । ଓଡ଼ିଶା ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ନିୟମାବଳୀ ଅନୁସାରେ ତାଙ୍କୁ ଏଥିନିମନ୍ତେ ୨୦ ଟଙ୍କା ଆବେଦନ ଶୁଳ୍କ ଦାଖଲ କରିବାକୁ ପଡ଼ିବ । ତେବେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ତାଲିକାଭୁକ୍ତ ବ୍ୟକ୍ତିବିଶେଷଙ୍କୁ ଏହି ଶୁଳ୍କ ଦାଖଲ କରିବାକୁ ପଡ଼ିବ ନାହିଁ । ଆବେଦନକାରୀଙ୍କୁ ୩୦ ଦିନ ମଧ୍ୟରେ ସଂପୃକ୍ତ ସୂଚନା ଅଧିକାରୀ ତଥ୍ୟ ପ୍ରଦାନ କରିବେ ତେବେ ଆବଶ୍ୟକ ତଥ୍ୟକୁ ଦେଖି ୟୁଜର୍ସ ଫି' ଧାର୍ଯ୍ୟ କରାଯିବ । ଏକ ପୃଷ୍ଠାର ତଥ୍ୟ ପାଇଁ ୫ ଟଙ୍କା, ପ୍ରାମାଣିକ ନକଲ ପାଇଁ ୧୦ ଟଙ୍କା, ସିଡି / ଫ୍ଲପି ପାଇଁ ଶହେ ଟଙ୍କା ହିସାବରେ ଫି' ଦେବାକୁ ପଡ଼ିବ । ଫି'ର ଧାର୍ଯ୍ୟ ମୂଲ୍ୟ ଆବେଦନକାରୀଙ୍କୁ ଜଣାଇବା ଓ ଆବେଦନକାରୀ ଫି' ଦାଖଲ କରିବା ସମୟ ଏହି ୩୦ ଦିନକୁ ବାଦ ଦେଇ ଗଣାଯିବ । ତେବେ ଯେଉଁଠି ଆବେଦନକାରୀଙ୍କ ଧନ ଓ ଜୀବନ ପ୍ରତି ବିପଦ ଆଶଙ୍କା ଥିବ ସେଠାରେ ସଂପୃକ୍ତ ସୂଚନା ଅଧିକାରୀଙ୍କୁ ୪୮ ଘଣ୍ଟା ମଧ୍ୟରେ ତଥ୍ୟ ଯୋଗାଇ ଦେବାକୁ ପଡ଼ିବ । ଯଦି କୌଣସି କାରଣରୁ ସୂଚନା ଅଧିକାରୀ ଆବେଦନକାରୀଙ୍କୁ ତଥ୍ୟ ପ୍ରଦାନ କରିବାକୁ ଅସମର୍ଥ ହୁଅନ୍ତି, ତେବେ ଖାରଜର କାରଣ ଦର୍ଶାଇ ଆବେଦନକୁ ପ୍ରତ୍ୟାଖାନ କରିପାରିବେ ଓ ଏଥିପାଇଁ ଆବେଦନକାରୀ ୪୦ ଟଙ୍କା ଫି' ଦେଇ ପୁଣି ପ୍ରଥମ ଅପିଲ ପ୍ରାଧିକାରୀଙ୍କୁ ଅପିଲ କରିପାରିବେ ବୋଲି ଜଣାଇଦେବେ । ଯେଉଁ କ୍ଷେତ୍ରରେ ଆବେଦନକାରୀ ଚାହୁଁଥିବା ତଥ୍ୟ ସଂପୂର୍ଣ୍ଣ ଭାବରେ ଦିଆନଯାଇ ପାରି କିଛି ଅଂଶ ଦିଆଯିବ, ସେଠାରେ ମଧ୍ୟ ସୂଚନା ଅଧିକାରୀ ଏ ବିଷୟରେ ଜଣାଇବେ । ଯଦି କୌଣସି ଆବେଦନକାରୀ ଚାହୁଁଥିବା ତଥ୍ୟ ସୂଚନା ଅଧିକାରୀଙ୍କୁ ତୃତୀୟ ପକ୍ଷଠାରୁ ମିଳିଥାଏ ବା ତୃତୀୟ ପକ୍ଷ ସେହି ତଥ୍ୟ ଗୋପନୀୟ ବୋଲି ମନେ କରୁଥାଆନ୍ତି, ସେଠାରେ ଆବେଦନ ପତ୍ର ମିଳିବାର ୫ ଦିନ

ମଧ୍ୟରେ ସଂପୃକ୍ତ ସୂଚନା ଅଧିକାରୀ ତୃତୀୟ ପକ୍ଷଙ୍କୁ ଏ ବିଷୟରେ ତଥ୍ୟ ଜଣାଇବାକୁ ଅନୁରୋଧ କରିବେ । ଏଭଳି ସୂଚନା ପ୍ରଦାନ ଲାଗି ୪୫ ଦିନ ସମୟସୀମା ଧାର୍ଯ୍ୟ କରାଯାଇଛି । ପ୍ରଥମ ଅପିଲ୍ ପ୍ରାଧିକାରୀଙ୍କଠାରୁ ନ୍ୟାୟ ନପାଇଲେ ୫୦ ଟଙ୍କା ଦାଖଲ କରି ଜଣେ ଦ୍ୱିତୀୟ ଅପିଲ୍ ପ୍ରାଧିକାରୀଙ୍କୁ ଅଭିଯୋଗ କରିପାରିବେ । ଦ୍ୱିତୀୟ ଅପିଲ୍ ପ୍ରାଧିକାରୀ ହେଉଛନ୍ତି ରାଜ୍ୟ ସୂଚନା କମିଶନ ।

ଏହି ଆଇନ ବଳରେ ରାଜ୍ୟରେ ସୂଚନା କମିଶନ ଗଠନ କରାଯାଇଛି, ଯାହାର କାର୍ଯ୍ୟକାଳ ହେଉଛି ପାଞ୍ଚବର୍ଷ । ଏହି କମିଶନରେ ଜଣେ ମୁଖ୍ୟ ସୂଚନା କମିଶନର ଓ ସର୍ବାଧିକ ଦଶ ଜଣ କମିଶନ ରହିପାରିବେ । ରାଜ୍ୟର ବୁଦ୍ଧିଜୀବୀ, ସାମ୍ବାଦିକ, ସମାଜସେବୀ, ଆଇନଜ୍ଞ, ଶିକ୍ଷାବିତ୍‌ମାନଙ୍କୁ ନେଇ ସୂଚନା କମିଶନ ଗଠନ କରାଯାଇପାରିବ । ଆମ ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ଜଣେ ମୁଖ୍ୟ ସୂଚନା କମିଶନର ଓ ଜଣେ କମିଶନରଙ୍କୁ ମୁଖ୍ୟମନ୍ତ୍ରୀ ନିଯୁକ୍ତି ଦେଇଛନ୍ତି । ରାଜ୍ୟ ସୂଚନା କମିଶନର ନିଜ ସ୍ୱତନ୍ତ୍ର କ୍ଷମତା ବଳରେ କୌଣସି ସୂଚନା ଅଧିକାରୀ ଯଦି ଭୁଲ ବା ଅସଂପୂର୍ଣ୍ଣ ତଥ୍ୟ ଆବେଦନକାରୀଙ୍କୁ ଦେଇଛନ୍ତି ବୋଲି ଅନୁଭବ କରନ୍ତି ତେବେ ଅଭିଯୁକ୍ତଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିବେ । ସେଥିପାଇଁ ସୂଚନା ଅଧିକାରୀଙ୍କ ପ୍ରତ୍ୟହ ୨୫୦ ଟଙ୍କା ହାରରେ ସର୍ବାଧିକ ୨୫ ହଜାର ଟଙ୍କାର ଜୋରିମାନା ଦେବାକୁ ପଡ଼ିପାରେ । ସେହିଭଳି କମିଶନ ଚାହିଁଲେ ବିନା ଫି'ରେ କୌଣସି ଆବେଦନକୁ ସିଧାସଳଖ ଗ୍ରହଣ କରି ତା' ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିବେ ।

ତେବେ ସବୁଠାରୁ ବଡ଼ କଥା ହେଲା ଆଇନଟିର ଫଳପ୍ରସୂ କାର୍ଯ୍ୟକାରିତା । ଆମ ରାଜ୍ୟରେ ବସବାସ କରୁଥିବା ଦାରିଦ୍ର୍ୟ ନିରକ୍ଷରତା କବଳିତ ସାଧାରଣ ଜନତା ଯଦି ଏହାର ସୁଫଳ ନ ପାଆନ୍ତି ତେବେ ଏହି ଆଇନଟି ଅନେକ ଭଲ ଆଇନ ଭଳି କେବଳ କାଗଜ କଲମ ଭିତରେ ସୀମିତ ରହିଯିବ ଓ ଅନ୍ୟପକ୍ଷରେ କେତେକ ନ୍ୟସ୍ତ ସ୍ୱାର୍ଥବ୍ୟକ୍ତିଙ୍କ ଦ୍ୱାରା ଆଇନର ଦୁରୁପଯୋଗ ହେବ, ତେଣୁ ଆଇନ କାର୍ଯ୍ୟକାରିତା ହେବା ସହିତ ଏହାର ବହୁଳ ପ୍ରସାର ପ୍ରଚାରର ପ୍ରୟୋଜନ ରହିଛି । ଲୋକଙ୍କ ମଧ୍ୟରେ ସୂଚନା ଅଧିକାର ସମ୍ବନ୍ଧରେ ସଚେତନତା ସୃଷ୍ଟି କରିବା ପାଇଁ ଉଭୟ ସରକାରୀ ଓ ବେସରକାରୀ ସଂଗଠନ ଆଗେଇ ଆସିବା ଉଚିତ, ତେବେ ଏହି ଆଇନର ମୁଖ୍ୟ ଆଭିମୁଖ୍ୟ ପୂରଣ ହୋଇପାରିବ ।

ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରତିଷ୍ଠାନ
ଭୁବନେଶ୍ୱର

---

## ଅପ୍ରେଲ ପହିଲାରେ ୧୩୮ଟି ତହସିଲରେ ଜମି ପାସ୍‌ବୁକ୍ ବଣ୍ଟନ କରିବାକୁ ନିଷ୍ପତ୍ତି

ଆସନ୍ତା ଅପ୍ରେଲ ପହିଲା, ଉତ୍କଳ ଦିବସରେ ରାଜ୍ୟର ଅବଶିଷ୍ଟ ୧୩୮ଟି ତହସିଲ୍‌ରେ ଜମି ପାସ୍‌ବୁକ୍ ବଣ୍ଟନ କରାଯିବ ବୋଲି ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ ପ୍ରକାଶ କରିଛନ୍ତି । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନେ ବିନାମୂଲ୍ୟରେ ଏବଂ ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ଲୋକମାନେ ୨୦ ଟଙ୍କା ଦାଖଲ କରି ଏହି ପାସ୍‌ବୁକ୍ ନେଇ ପାରିବେ ବୋଲି ସେ କହିଛନ୍ତି । ଏଥିପାଇଁ ଆବଶ୍ୟକ ଫର୍ମ ପ୍ରତ୍ୟେକ ତହସିଲ୍‌ରେ ମାଗଣାରେ ଉପଲବ୍ଧ ହେଉଛି ବୋଲି ମଧ୍ୟ ସେ କହିଛନ୍ତି ।

ସୂଚନାଯୋଗ୍ୟ, ଗତ ଜାନୁଆରୀ ୨୬ ତାରିଖ, ପବିତ୍ର ସାଧାରଣତନ୍ତ୍ର ଦିବସରେ ପୂର୍ବ ନିଷ୍ପତ୍ତି ଅନୁଯାୟୀ ରାଜ୍ୟର ୩୩ଟି ସଦର ମହକୁମା ତହସିଲ୍‌ରେ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଜମି ପାସ୍‌ବୁକ୍ ବଣ୍ଟନ କରାଯାଇଛି ।

# ବିଧାନସଭା କମିଟିଗୁଡ଼ିକର ଟେଲି-ପ୍ରସାରଣ ନିହାତି ଜରୁରୀ

ପ୍ରଭୁକଲ୍ୟାଣ ମହାପାତ୍ର

**ବ**ର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ରାଜ୍ୟ ବିଧାନସଭାର ସଂପୂର୍ଣ୍ଣ ବିବରଣୀ ଟେଲିଭିଜନ ମାଧ୍ୟମରେ ସିଧା ପ୍ରସାରଣ କରାଯିବା ଅପରିହାର୍ଯ୍ୟ ହୋଇପଡ଼ିଛି । ଅପରପକ୍ଷେ ବିଧାନସଭା କମିଟି ବା ଗୃହ କମିଟିଗୁଡ଼ିକର କାର୍ଯ୍ୟାବଳୀ ମଧ୍ୟ ଗୋପନୀୟ ରଖାଯିବା ପରିବର୍ତ୍ତେ ଗଣମାଧ୍ୟମ ବିଶେଷକରି ଟେଲିଭିଜନ କ୍ୟାମେରାକୁ ତାହା ଉନ୍ମୁକ୍ତ କରାଯିବା ଜରୁରୀ ହୋଇପଡ଼ିଛି । ତଦ୍ୱାରା ଗୋଟିଏ ପକ୍ଷରେ ସୂଚନାପ୍ରାପ୍ତି ଅଧିକାର ପ୍ରତି ସମୁଚିତ ନ୍ୟାୟ ପ୍ରଦର୍ଶନ କରାଯାଇପାରିବ । ଅପରପକ୍ଷେ ସଂସଦୀୟ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ଶୃଙ୍ଖଳିତ କରାଯିବା ସହିତ ତାକୁ ଜନସାଧାରଣଙ୍କ ନିକଟରେ ଅଧିକ ଉତ୍ତରଦାୟୀ କରାଯାଇପାରିବ ବୋଲି ବିଶାରଦମାନେ ମତ ଦେଉଛନ୍ତି । ଏପରିକି ବାଚସ୍ପତି ସମ୍ମିଳନୀଗୁଡ଼ିକରେ ମଧ୍ୟ ବିଧାନସଭା ଅଧିବେଶନର ସଂପୂର୍ଣ୍ଣ ଟେଲି-ପ୍ରସାରଣ ଉପରେ ବାରମ୍ବାର ଗୁରୁତ୍ୱାରୋପ କରାଯାଉଛି । ଏହାସତ୍ତ୍ୱେ ବିଭିନ୍ନ କାରଣରୁ ଅନେକ ରାଜ୍ୟ ବିଧାନସଭା ଅଧିବେଶନର ସଂପୂର୍ଣ୍ଣ ବିବରଣୀ ଅଦ୍ୟାବଧି ଟେଲି-ପ୍ରସାରଣ କରାଯିବା ସମ୍ଭବପର ହୋଇପାରିନାହିଁ ।

ଏବେ ଓଡ଼ିଶା ବିଧାନସଭାର ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମକୁ କେବଳ ଟେଲିଭିଜନ ମାଧ୍ୟମରେ ପ୍ରସାରଣ କରିବା ଲାଗି ଅନୁମତି ଦିଆଯାଇଛି । ଅନ୍ୟପକ୍ଷରେ ବିଧାନସଭାରେ ରାଜ୍ୟପାଳଙ୍କ ଅଭିଭାଷଣ ଏବଂ ଅର୍ଥମନ୍ତ୍ରୀଙ୍କ ବଜେଟ୍ ଭାଷଣର ଟେଲି-ପ୍ରସାରଣକୁ ମଧ୍ୟ ଅନୁମୋଦନ କରାଯାଇଛି । ତେବେ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମକୁ ଓ.ଟି.ଭି. ସିଧା ପ୍ରସାରଣ କରୁଥିବାବେଳେ ଇ.ଟି.ଭି. ତା'ର ସମ୍ବାଦ ପରିବେଷଣ କାଳରେ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମର ଫୁଟେଜ୍ ବ୍ୟବହାର କରୁଛି । ଦୂରଦର୍ଶନ ଓ ଆକାଶବାଣୀ ପ୍ରତ୍ୟେକ ଦିନର ବିବରଣୀକୁ ଯଥାକ୍ରମେ ବିଧାନସଭା ସମାଚାର ଏବଂ ବିଧାନସଭା ସମ୍ବାଦ ହିସାବରେ ସନ୍ଧ୍ୟା ସମୟରେ ପ୍ରସାରଣ କରୁଛନ୍ତି । ବିଧାନସଭାର ସଂପୂର୍ଣ୍ଣ ବିବରଣୀକୁ ରେକର୍ଡ଼ିଂ କରିବା ପାଇଁ ଅନୁମତି ପାଇନଥିବା ଯୋଗୁଁ ଓ.ଟି.ଭି. ଏବଂ ଇ.ଟି.ଭି. କେବଳ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମର ଦୃଶ୍ୟାବଳୀ (ଭିଜୁଆଲ) ପ୍ରସାରଣ କରିବା ଲାଗି ସମର୍ଥ ହେଉଛନ୍ତି । ସେହିପରି ବିଧାନସଭା କମିଟିଗୁଡ଼ିକର କାର୍ଯ୍ୟାବଳୀ ଗୋପନ ରଖିବା ଲାଗି ନିୟମରେ ବ୍ୟବସ୍ଥା ଥିବାରୁ ତାହା ଗଣମାଧ୍ୟମକୁ ବର୍ତ୍ତମାନ ପର୍ଯ୍ୟନ୍ତ ଉନ୍ମୁକ୍ତ କରାଯାଉନାହିଁ । ଫଳରେ ବିଧାନସଭା କମିଟିର କାର୍ଯ୍ୟକଳାପ ସଂପର୍କରେ ଲୋକମାନେ ଅବଗତ ହୋଇପାରୁନାହାନ୍ତି ଏବଂ ସେଥିନେଇ ବିଭିନ୍ନ ମହଲରେ ଗଭୀର ସନ୍ଦେହ ପ୍ରକାଶ ପାଉଛି ।

କିନ୍ତୁ ରାଜ୍ୟ ବିଧାନସଭାଗୁଡ଼ିକର ଟେଲି-ପ୍ରସାରଣ ଲାଗି ଗଠିତ ବାଚସ୍ପତି କମିଟି ମତପୋଷଣ କରିଛନ୍ତି ଯେ, ଗଣତନ୍ତ୍ରରେ ବିଧାୟକମାନେ କେବଳ ଆଇନ ପ୍ରଣୟନ କରନ୍ତି ନାହିଁ । ସେମାନେ ମଧ୍ୟ ଜନସାଧାରଣଙ୍କ ଆଶା ଓ ଆକାଂକ୍ଷାର ପ୍ରତୀକ । ଉତ୍ତମ ଶାସନକୁ ସୁନିଶ୍ଚିତ କରିବା ସହିତ ସେମାନେ ମଧ୍ୟ ବିକାଶ ପ୍ରକ୍ରିୟାର ଉତ୍‌ପ୍ରେରକ ଭାବେ କାର୍ଯ୍ୟ ସଂପାଦନ କରନ୍ତି । ସେଥିଯୋଗୁଁ ବିଧାନସଭାର ଆଲୋଚନା ଓ ବିତର୍କଗୁଡ଼ିକ ସାଧାରଣ ଲୋକଙ୍କ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ (In democracies, the legislatures do not merely legislate but are symbols of hopes & aspiration of the people. Besides ensuring good governance they act as catalyst for the developmental process. The debates & discussions in the legislatures are, therefore, of considerable importance to the common man) । କେବଳ ସେତିକି ନୁହେଁ, ଉକ୍ତ କମିଟି ଆହୁରି ମଧ୍ୟ ମତବ୍ୟକ୍ତ କରିଛି ଯେ, ବର୍ତ୍ତମାନ ସ୍ୱଚ୍ଛତା ଓ ତଥ୍ୟ ପାଇବାର ଅଧିକାର ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିବା ପରିପ୍ରେକ୍ଷୀରେ ବିଧାନସଭା ବିବରଣୀର ଟେଲି-ପ୍ରସାରଣ ପ୍ରସ୍ତାବକୁ ତ୍ୱରାନ୍ୱିତ ଭାବେ କାର୍ଯ୍ୟକାରୀ କରାଯିବା ଦରକାର । ଏହି ପ୍ରକଳ୍ପ ପାଇଁ ବିଧାୟକ ଆଞ୍ଚଳିକ ଉନ୍ନୟନ ପାଣ୍ଠି କିମ୍ବା ସେହି ଧରଣର ଅନ୍ୟାନ୍ୟ ପାଣ୍ଠିରୁ ଏକକାଳୀନ ଅର୍ଥ ଯୋଗାଡ଼ କରାଯାଇପାରିବ । ବିଧାନସଭା ଏ ସଂପର୍କିତ ଏକ ପ୍ରସ୍ତାବ ଗୃହରେ ଆଗତ କରି ରାଜ୍ୟ ସରକାରଙ୍କଠାରୁ ଅର୍ଥ ହାସଲ କରିପାରିବ ଏବଂ ଟେଲି-ପ୍ରସାରଣ ପାଇଁ ସ୍ଥାୟୀ ଭିତ୍ତିଭୂମି ପ୍ରତିଷ୍ଠା କରିପାରିବ - However, now when added emphasis is being given to right to information & transparency,

the committee feel that the proposal for telecasting of proceedings of legislature should be implemented expeditiously. The committee, therefore recommend an alternative source of funding of the project through a one-time contribution from the state legislatures local area development fund or similar schemes which place funds at the discretion of legislatures. The committee are of the opinion that the state legislatures may pass a resolution in their respective Houses asking the state government to provide funds to the respective state legislatures out of the quota of the local area development fund of MLAs/MLCs of the states as early as possible to meet the expenditure involved in setting up the permanent infrastructure for televising. The state legislatures may also decide either in the General Purposes Committee (GPC) or through a resolution of the House, the amount to be shared by each member as a one-time contribution.

ସେହି କମିଟି ଆହୁରି ଦର୍ଶାଇଛି ଯେ, ବିଧାନସଭା ବିବରଣୀକୁ ଲୋକମାନଙ୍କ ନିକଟରେ ପହଞ୍ଚାଇବା ଲାଗି ଗୃହ କାର୍ଯ୍ୟକ୍ରମର ଟେଲି-ପ୍ରସାରଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ର ହୋଇଥିବା ଦୃଷ୍ଟିରୁ ରାଜ୍ୟ ବିଧାନସଭା ପାଇଁ ଯେକୌଣସି ନୂତନ ଅଟ୍ଟାଳିକା ନିର୍ମାଣ କାଳରେ ଟେଲି-ପ୍ରସାରଣ ପାଇଁ ସ୍ଥାୟୀ ଭିତ୍ତିଭୂମିର ବ୍ୟବସ୍ଥା କରାଯିବା ଦରକାର । (The Committee are of the opinion that televising of the proceedings is such an important tool of disseminating information on legislative business to the people that whenever a new building is constructed for any state legislature for housing its chamber, the state government should invariably make a provision for setting up permanent infrastructure for televising the proceedings.) ଏତଦ୍‌ଭିନ୍ନ ଉକ୍ତ କମିଟି ପୁଣି ମତପୋଷଣ କରିଛି ଯେ, ଗୃହ ବିବରଣୀର ଟେଲି-ପ୍ରସାରଣ ସଂପର୍କରେ ଲୋକମାନଙ୍କ ମତ ନେବା ଲାଗି ରାଜ୍ୟ ବିଧାନସଭାଗୁଡ଼ିକ ପକ୍ଷରୁ କୌଣସି ସର୍ବେକ୍ଷଣ କରାଯାଇନାହିଁ, ଯଦିଓ ସାଧାରଣ ଭାବେ ଧାରଣା ରହିଛି ଯେ ଲୋକମାନେ ବିଧାନସଭାର ଗୁରୁତ୍ୱପୂର୍ଣ୍ଣ ଓ ଉତ୍ତେଜନାପୂର୍ଣ୍ଣ ବିତର୍କ ଏବଂ ବିଧାୟକମାନଙ୍କ କାର୍ଯ୍ୟକଳାପ ସଂପର୍କରେ ଦେଖିବା ଲାଗି ଆଗ୍ରହୀ । ବିଧାନସଭା ବିବରଣୀର ଟେଲି-ପ୍ରସାରଣ ଲୋକଙ୍କ ଉପରେ କେତେ ଦୂର ପ୍ରଭାବ ପକାଉଛି ତାହା ଜାଣିବା ଲାଗି ବିଧାନସଭାଗୁଡ଼ିକ ପକ୍ଷରୁ ଏହି ଟେଲି-ପ୍ରସାରଣ ସଂପର୍କରେ ବାରମ୍ବାର ସର୍ବେକ୍ଷଣ କରାଯିବା ଆବଶ୍ୟକ - Committee observed that the state legislatures had not conducted any survey to elicit the views of the people about telecasting of the proceedings of legislatures. Though there is a general feeling that people are enthusiastic about watching important & vibrant proceedings of legislatures & are keen to know about the working of legislative bodies & the contributions of the elected legislatures, the committee are of the opinion that the legislatures may from time to time conduct surveys in order to know the impact of telecasting of the proceedings of legislatives on people.

ସର୍ବୋପରି ବିଧାନସଭା ଅଧିବେଶନର ସଂପୂର୍ଣ୍ଣ ବିବରଣୀକୁ ସିଧା ଟେଲି-ପ୍ରସାରଣ କରିବା ସପକ୍ଷରେ ଦୃଢ଼ ମତପୋଷଣକରି କମିଟି ପ୍ରତ୍ୟେକ ବିଧାନସଭାର ଟେଲି-ପ୍ରସାରଣ ସଂପର୍କରେ ଚୂଡ଼ାନ୍ତ ନିଷ୍ପତ୍ତି ନେବା ଅଧିକାର ସଂପୃକ୍ତ ବାଚସ୍ପତିଙ୍କ ଉପରେ ଛାଡ଼ି ଦେଇଛି । (While supporting fully the idea of telecasting live the proceedings of state legislatures, the committee, however, are of the view that the final decision on telecasting should be left to the discretion of indivisual legislative body) ।

ଅପରପକ୍ଷେ ବିଧାନସଭା କମିଟି ବା ଗୃହ କମିଟିଗୁଡ଼ିକର କାର୍ଯ୍ୟାବଳୀ ରିପୋର୍ଟ ପ୍ରଦାନ ନହେବା ପର୍ଯ୍ୟନ୍ତ ସଂପୂର୍ଣ୍ଣ ଗୋପନ ରଖିବା ଲାଗି ଏବେ ଆମ ବିଧାନସଭା ନିୟମାବଳୀରେ ବ୍ୟବସ୍ଥା ରହିଛି । ଫଳରେ ବିଧାନସଭାରେ ରିପୋର୍ଟ ପ୍ରଦାନ ପୂର୍ବରୁ ଗୃହ କମିଟିଗୁଡ଼ିକର କାର୍ଯ୍ୟାବଳୀ ସଂପର୍କରେ ଲୋକମାନେ ଅବଗତ ହୋଇପାରୁନାହାନ୍ତି । କିନ୍ତୁ ବିଶାରଦମାନେ ମତପୋଷଣ କରିଛନ୍ତି ଯେ, କେତେକ ନିର୍ଦ୍ଦିଷ୍ଟ ବିଷୟ ବ୍ୟତୀତ କମିଟିର ଅନ୍ୟ ସମସ୍ତ କାର୍ଯ୍ୟାବଳୀକୁ ଜନସାଧାରଣଙ୍କ ଅବଗତି ନିମନ୍ତେ ଗଣମାଧ୍ୟମକୁ ଉନ୍ମୁକ୍ତ କରାଯିବା ଦରକାର । ତଦ୍ୱାରା ଏହି କମିଟିଗୁଡ଼ିକର ସ୍ୱଚ୍ଛତା, କାର୍ଯ୍ୟଦକ୍ଷତା ଓ ଉତ୍ତରଦାୟିତ୍ୱକୁ ସୁନିଶ୍ଚିତ କରାଯାଇପାରିବ ।

ଅନ୍ୟପକ୍ଷରେ ସେହି କମିଟିଗୁଡ଼ିକର ନିଷ୍ଠା, କର୍ତ୍ତବ୍ୟ ପରାୟଣତା ଏବଂ ସାଧୁତାକୁ ଘେନି ସୃଷ୍ଟି ହେଉଥିବା ସନ୍ଦେହ ମଧ୍ୟ ଅପନୋଦନ କରାଯାଇପାରିବ । ବର୍ତ୍ତମାନ ବିଧାନସଭା କମିଟିଗୁଡ଼ିକର କାର୍ଯ୍ୟଦକ୍ଷତା ମୂଲ୍ୟାୟନ କିମ୍ବା ତଦାରଖ କରିବା ପାଇଁ କୌଣସି ବ୍ୟବସ୍ଥା ନାହିଁ । ଏହାର ସୁଯୋଗ ନେଇ ଅଧିକାଂଶ କମିଟି ଅତ୍ୟନ୍ତ ଦାୟିତ୍ୱହୀନ ଭାବେ କାର୍ଯ୍ୟ ସଂପାଦନ କରୁଥିବା ପରିଲକ୍ଷିତ ହେଉଛି । ବର୍ଷ ବର୍ଷ ଧରି ରାଜ୍ୟ ଭିତର ଓ ବାହାର ସ୍ଥାନମାନଙ୍କୁ ବ୍ୟୟବହୁଳ ଗସ୍ତ କରି ଅନେକ କମିଟି କୌଣସି ରିପୋର୍ଟ ପ୍ରଦାନ କରୁନାହାନ୍ତି । ଅନ୍ୟପକ୍ଷରେ ଯେଉଁ ସ୍ୱଳ୍ପସଂଖ୍ୟକ କମିଟି ସେମାନଙ୍କ ରିପୋର୍ଟ ପ୍ରଦାନ କରୁଛନ୍ତି, ତାହା ଅତ୍ୟନ୍ତ ନିମ୍ନମାନର ହେଉଥିବା ଯୋଗୁଁ ସରକାର ସେଥିମଧ୍ୟରୁ ଅଧିକାଂଶ ରିପୋର୍ଟକୁ ଆଦୌ ଗ୍ରହଣ କରୁନାହାନ୍ତି । ଫଳରେ ରାଜ୍ୟର ଗରିବ ଟିକସଦାତାଙ୍କ ଅର୍ଥରେ ପରିଚାଳିତ ବିଧାନସଭା କମିଟି ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଥିଲେ ସୁଦ୍ଧା ତହିଁରୁ ଆଶାନୁରୂପ ସୁଫଳ ମିଳିପାରୁନାହିଁ । ତେବେ ଏହି କମିଟି ବ୍ୟବସ୍ଥାକୁ ଅଧିକ ଅର୍ଥପୂର୍ଣ୍ଣ ଓ ଦାୟିତ୍ୱସଂପନ୍ନ କରି ଗଢ଼ିତୋଳିବା ପାଇଁ ବିଭିନ୍ନ ଗଣତାନ୍ତ୍ରିକ ରାଷ୍ଟ୍ରରେ ସଂସଦୀୟ କମିଟିଗୁଡ଼ିକର କାର୍ଯ୍ୟାବଳୀ ବହୁ ବର୍ଷ ପୂର୍ବରୁ ସିଧାସଳଖ ଟେଲିଭିଜନ ମାଧ୍ୟମରେ ପ୍ରସାରଣ କରାଯାଉଛି । କାରଣ ସଂସଦୀୟ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଜନସାଧାରଣ ହେଉଛନ୍ତି ପ୍ରକୃତ ମାଲିକ ବା ସର୍ବଶକ୍ତିମାନ । ସେହିମାନେ ହିଁ ହେଉଛନ୍ତି ଗଣତନ୍ତ୍ରର ପ୍ରକୃତ ରକ୍ଷକ ଏବଂ ବିଧାନସଭା ସମେତ ବିଧାୟକମାନଙ୍କ କାର୍ଯ୍ୟକଳାପର ବାସ୍ତବ ମୂଲ୍ୟାୟକ । ତେଣୁ ବିଧାନସଭା ଓ ବିଧାନସଭା କମିଟିଗୁଡ଼ିକର କାର୍ଯ୍ୟାବଳୀ ସମେତ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ବିଧାୟକମାନଙ୍କ କାର୍ଯ୍ୟଦକ୍ଷତା ସଂପର୍କରେ ଜନସାଧାରଣ ସଂପୂର୍ଣ୍ଣ ଭାବେ ଅବଗତ ହେବା ଉଚିତ । ସେଥିଯୋଗୁଁ ଆମର ପଥପ୍ରଦର୍ଶକ ବ୍ରିଟିଶ ପାର୍ଲାମେଣ୍ଟ ତା'ର ସଭାଗୃହ ସମେତ ସଂସଦୀୟ କମିଟିଗୁଡ଼ିକୁ ଅଶୀ ଦଶକରୁ ଟେଲିଭିଜନ କ୍ୟାମେରାକୁ ଉନ୍ମୁକ୍ତ କରିଥିବାବେଳେ ଅଷ୍ଟ୍ରେଲିଆ ପାର୍ଲାମେଣ୍ଟ ଓ ତା'ର ସଂସଦୀୟ କମିଟିଗୁଡ଼ିକର ସଂପୂର୍ଣ୍ଣ ବିବରଣୀ ନବେ ଦଶକରୁ ଦେଶବାସୀଙ୍କ ପାଇଁ ଟେଲି-ପ୍ରସାରଣ କରୁଛି । ତେବେ କାନାଡ଼ା ପୃଥିବୀର ପ୍ରଥମ ରାଷ୍ଟ୍ର ହିସାବରେ ୧୯୭୭ ଅକ୍ଟୋବର ମାସଠାରୁ ପାର୍ଲାମେଣ୍ଟ ବିବରଣୀକୁ ଟେଲିଭିଜନ ଯୋଗେ ପ୍ରସାରିତ କରୁଥିବାବେଳେ ଦିନକୁଦିନ ଅଧିକ ରାଷ୍ଟ୍ର ସେମାନଙ୍କ ପାର୍ଲାମେଣ୍ଟ ବିବରଣୀର ଟେଲି-ପ୍ରସାରଣ ଲାଗି ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି । ଫଳରେ ବର୍ତ୍ତମାନ ପୃଥିବୀର ୮୦ରୁ ଊର୍ଦ୍ଧ୍ୱ ରାଷ୍ଟ୍ର ଟେଲିଭିଜନ କ୍ୟାମେରାକୁ ସେମାନଙ୍କ ପାର୍ଲାମେଣ୍ଟ ଗୃହ ଉନ୍ମୁକ୍ତ କରିଥିବା ଜଣାପଡ଼ିଛି ।

ତେବେ ଓଡ଼ିଶା ବିଧାନସଭାର ଆଂଶିକ ବିବରଣୀ ଏବେ ଟେଲିଭିଜନ ମାଧ୍ୟମରେ ପ୍ରସାରିତ ହେଉଥିଲେ ସୁଦ୍ଧା ଗୃହ କମିଟି ବା ବିଧାନସଭା କମିଟିଗୁଡ଼ିକର କାର୍ଯ୍ୟାବଳୀକୁ ଅଦ୍ୟାବଧି ବିଧିବଦ୍ଧ ଭାବେ ଗଣମାଧ୍ୟମ ବିଶେଷକରି ଟେଲିଭିଜନ କ୍ୟାମେରାକୁ ଉନ୍ମୁକ୍ତ କରାଯାଇନାହିଁ । ସୁସ୍ଥ ଗଣତାନ୍ତ୍ରିକ ପରମ୍ପରା ପ୍ରତି ଦୃଷ୍ଟି ଦେଇ ଆମର ଆଇନ ପ୍ରଣୟନକାରୀମାନେ ତୁରନ୍ତ ବିଧାନସଭା କମିଟି କାର୍ଯ୍ୟାବଳୀକୁ ଗୋପନୀୟ ରଖାଯିବା ବ୍ୟବସ୍ଥାର ଉଚ୍ଛେଦ କରିବା ଆବଶ୍ୟକ । ବିଶେଷକରି ରାଜ୍ୟରେ ୨୦୦୫ ଅକ୍ଟୋବର ମାସରୁ ସୂଚନାପ୍ରାପ୍ତି ଅଧିକାର ଆଇନ ବଳବତ୍ତର ହେବାପରେ ବିଧାନସଭା କମିଟିଗୁଡ଼ିକର କାର୍ଯ୍ୟାବଳୀ ଗୋପନୀୟ ରଖିବା ପାଇଁ ଗୃହ ପରିଚାଳନା ସଂପର୍କିତ ନିୟମାବଳୀରେ ଥିବା ବ୍ୟବସ୍ଥା ସଂପୂର୍ଣ୍ଣ ଅପ୍ରାସଙ୍ଗିକ ହୋଇପଡ଼ିଛି । ତେଣୁ ସେହି ବ୍ୟବସ୍ଥାକୁ ଅଚିରେ ସଂଶୋଧନ କରାଯିବା ଦରକାର । ସର୍ବୋପରି ବିଧାନସଭାର ସଂପୂର୍ଣ୍ଣ ବିବରଣୀ ଜନସାଧାରଣଙ୍କ ଅବଗତି ପାଇଁ ଗଣମାଧ୍ୟମକୁ ଉନ୍ମୁକ୍ତ କରାଯାଉଥିବାବେଳେ ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଅର୍ଥାତ୍ ସୂଚନାପ୍ରାପ୍ତି ଅଧିକାର ଯୁଗରେ ବିଧାନସଭା କମିଟିଗୁଡ଼ିକର କାର୍ଯ୍ୟାବଳୀ ଟେଲିଭିଜନ ମାଧ୍ୟମରେ ସିଧା ପ୍ରସାରଣ କରିବା ଅନ୍ୟ ଏକ ଯୁଗାନ୍ତକାରୀ ତଥା ଐତିହାସିକ ପଦକ୍ଷେପ ହେବ ବୋଲି ବିଶାରଦମାନେ ବିଚାର କରୁଛନ୍ତି ।

ଭି.ଆର୍.-୩/୨, ୟୁନିଟ୍-୩
ରିଜର୍ଭ ବ୍ୟାଙ୍କ ପଛପଟ
ଭୁବନେଶ୍ୱର-୭୫୧୦୦୧



# ସୂଚନା ଅଧିକାର ଆଇନ - ୨୦୦୫ କାର୍ଯ୍ୟକାରୀ କରିବାରେ ରାଜ୍ୟ ସରକାରଙ୍କ ସଫଳ ପ୍ରୟାସ

ଛବି ମହାନ୍ତି

**ବ**ହୁ ପ୍ରତୀକ୍ଷିତ ସୂଚନା ଅଧିକାର ବିଲ୍-୨୦୦୪ ଅବଶେଷରେ ୨୦୦୫ ମସିହା ପାର୍ଲାମେଣ୍ଟ ଅଧିବେଶନ କାଳରେ ଲୋକସଭାରେ ମଇ ୧୧ ତାରିଖ ଓ ରାଜ୍ୟସଭାରେ ମଇ ୧୨ ତାରିଖ ଦିନ ପାରିତ ହେଲା । ଏହା ୨୦୦୫ ମସିହା ଜୁନ୍ ୧୫ ତାରିଖରେ ମାନ୍ୟବର ରାଷ୍ଟ୍ରପତିଙ୍କ ସମ୍ମତି ବା ଅନୁମୋଦନ ଲାଭ କଲା । ଏହା ଭାରତ ସରକାରଙ୍କ ଭାରତକା ରାଜପତ୍ର ବା ଗେଜେଟ୍ ଅଫ୍ ଇଣ୍ଡିଆରେ ଜୁନ୍ ୨୧ ତାରିଖ ୨୦୦୫ ଦିନ ଆଇନ ଓ ବିଚାର ମନ୍ତ୍ରଣାଳୟର (ଲେଜିସ୍‌ଲେଟିଭ୍ ଡିପାର୍ଟମେଣ୍ଟ) ବିଧି ବିଭାଗ ଦ୍ୱାରା ସର୍ବସାଧାରଣ ତଥା ଭାରତର ନାଗରିକଙ୍କ ଅବଗତି ନିମନ୍ତେ ପ୍ରକାଶ କରାଗଲା । ଏହି ଆଇନ୍ ଦ୍ୱାରା ଭାରତର ପ୍ରତ୍ୟେକ ନାଗରିକଙ୍କୁ ସମସ୍ତ ବିଷୟରେ ତଥ୍ୟ ଯଥା ପବ୍ଲିକ୍ ଅଥରଟି ବା ସର୍ବସାଧାରଣ କର୍ତ୍ତୃପକ୍ଷଙ୍କଠାରୁ ସୂଚନା ପାଇବାରେ ଭାରତର ନାଗରିକମାନେ ସ୍ୱଚ୍ଛତା ଓ ଉତ୍ତର ଦାୟିତ୍ୱତାକୁ ବଜାୟ ରଖିବା ସଂଗେସଂଗେ ଏହାଦ୍ୱାରା ସର୍ବସାଧାରଣ ସ୍ୱଚ୍ଛନ୍ଦରେ କିପରି ସବୁ ତଥ୍ୟ ପବ୍ଲିକ୍ ଅଥରିଟିଠାରୁ ପାଇପାରିବେ, ତାହାର ବିଧିବଦ୍ଧ ବ୍ୟବସ୍ଥା ଏହି ଆଇନର ପରିସରଭୁକ୍ତ । ଏତଦ୍‌ବ୍ୟତୀତ ଏକ ସେଣ୍ଟ୍ରାଲ୍ ଇନଫର୍‌ମେସନ୍ କମିଶନ୍ ବା କେନ୍ଦ୍ରୀୟ ସୂଚନା କମିଶନ ଏବଂ ଷ୍ଟେଟ୍ ଇନ୍‌ଫରମେସନ୍ କମିଶନମାନ ଗଠନ କରିବା ଏହି ଆଇନର ହେଉଛି ଏକ ବିଶେଷ ଦିଗ । କେନ୍ଦ୍ର ସ୍ତରରେ ଓ ରାଜ୍ୟ ସ୍ତରରେ ମୁଖ୍ୟ ସୂଚନା କମିଶନର ଓ ଇନ୍‌ଫରମେସନ୍ କମିଶନରମାନଙ୍କୁ କେନ୍ଦ୍ର ଓ ରାଜ୍ୟ ସରକାର ଇତି ମଧ୍ୟରେ ନିଯୁକ୍ତି ଦେଇସାରିଲେଣି ।

### ଇନ୍‌ଫରମେସନ୍ ବା ସୂଚନା

ଇନ୍‌ଫରମେସନ୍ ବା ସୂଚନାର ସଂଜ୍ଞା ହେଉଛି ସମସ୍ତ ସୂଚନା ବସ୍ତୁ ଯଥା- ରେକର୍ଡ଼ିସ୍, ଡକ୍ୟୁମେଣ୍ଟ, ଇ-ମେଲ୍ ଓପିନିୟନସ୍ (ମତାମତ) ଆଡ୍‌ଭାଇସ୍ (ପରାମର୍ଶ) ପ୍ରେସ୍ ରିଲିଜ୍ ମାନ, ସର୍କୁଲାର୍ସ, ଅର୍ଡରସ୍ (ଆଦେଶନାମା), ଲଗ୍‌ବୁକ୍ସ, କଣ୍ଟ୍ରାକ୍ଟସ୍ (ଚୁକ୍ତିନାମା), ଆନୁଷଙ୍ଗିକ କାଗଜପତ୍ର, ସାମ୍ପୁଲ୍ସ, ମଡେଲ୍ସ (ନମୁନା), ଡାଟା ମ୍ୟାଟେରିଆଲ୍ସ ଯାହାକି ଇଲେକ୍‌ଟ୍ରୋନିକ୍ସ ଗଣମାଧ୍ୟମ ଦ୍ୱାରା ସଂରକ୍ଷିତ ହୋଇ ରଖାଯାଇଥାଏ, ତାହାକୁ ଉପଲବ୍ଧ କରାଇବ । ଏହାବ୍ୟତୀତ ଘରୋଇ ସଂସ୍ଥାମାନଙ୍କରୁ ମଧ୍ୟ ତଥ୍ୟ ଆହରଣ କରିବା ପ୍ରୟାସ ସହଜସାଧ୍ୟ ହେବ । ଏହାର ଅନ୍ୟ ଏକ ଦିଗ ହେଉଛି ଏହି ଆଇନ ପ୍ରଣୟନ କରିବାର ୧୦୦ ଦିନ ମଧ୍ୟରେ ପ୍ରତ୍ୟେକ ପବ୍ଲିକ୍ ଅଥରିଟି ବା ସର୍ବସାଧାରଣ କର୍ତ୍ତୃପକ୍ଷ ବ୍ୟକ୍ତି ବିଶେଷଙ୍କୁ ସୂଚନା ଯୋଗାଇ ଦେବାପାଇଁ ସମସ୍ତ ପ୍ରଶାସନିକ ଇଉନିଟ୍, ସଂସ୍ଥା ଏବଂ କାର୍ଯ୍ୟାଳୟମାନଙ୍କରେ ଯେତେଦୂର ସମ୍ଭବ ସେତେ ଜଣ ଯଥା- କେନ୍ଦ୍ରୀୟ ସୂଚନା ଅଧିକାରୀ ରାଜ୍ୟସ୍ତରୀୟ ସୂଚନା ଅଧିକାରୀମାନଙ୍କୁ ଚିହ୍ନଟ କରାଇ ଅବସ୍ଥାପିତ କରାଇବେ । ଏହାବ୍ୟତୀତ ଏହି ଆଇନ ଅନୁଯାୟୀ ପ୍ରତ୍ୟେକ ସବ୍‌ଡିଭିଜନ୍‌ସ୍ତରୀୟ ବା ଉପଖଣ୍ଡୀୟ ସ୍ତରରେ ବା ଉପଜିଲ୍ଲାସ୍ତରରେ ଜଣେ କେନ୍ଦ୍ରୀୟ ଆସିଷ୍ଟାଣ୍ଟ ପବ୍ଲିକ୍ ଇନ୍‌ଫରମେସନ୍ ଅଫିସରଙ୍କୁ ଚିହ୍ନଟ କରାଇ ଅବସ୍ଥାପିତ କରାଇବେ ଓ ସେ ଦରଖାସ୍ତ ଏବଂ ଆବଶ୍ୟକୀୟ ସୂଚନା ପାଇବା ପାଇଁ ନାଗରିକମାନେ ଯେଉଁ ଦରଖାସ୍ତ ଦେଇଥିବେ ବା ଏହି ଆଇନ ଅନୁସାରେ ଆପିଲ୍ କରିଥିବେ, ସେଗୁଡ଼ିକୁ ସେଣ୍ଟ୍ରାଲ୍ ପବ୍ଲିକ୍ ରିଲେସନ ଅଫିସର ବା ବରିଷ୍ଠ ଅଧିକାରୀମାନଙ୍କୁ ପ୍ରଦାନ କରିପାରିବେ । ଏହି ଆଇନ ବଳରେ ସାଧାରଣ ନାଗରିକ ଯେପରି ପର୍ଯ୍ୟାପ୍ତ ସୂଚନା ପାଇପାରିବେ ତାହାର ବିଶଦ୍ ବିବରଣୀ ଏହି ୨୨ ପୃଷ୍ଠା ବ୍ୟାପୀ ଗେଜେଟ୍‌ରେ ସବିଶେଷ ଉଲ୍ଲେଖ ରହିଛି ।

୨୦୦୫ ଅକ୍ଟୋବର ୧୨ ତାରିଖରୁ ଆମ ରାଜ୍ୟରେ ସୂଚନା ଅଧିକାର ୨୦୦୫ ଲାଗୁ ହୋଇଛି । ଇତିମଧ୍ୟରେ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ଇଂରାଜୀରେ Right to Information Act-2005 ବା ସୂଚନା ଅଧିକାର ଆଇନ ୨୦୦୫ ଓ ଅନ୍ୟ ଏକ ପୁସ୍ତକ Orissa, Right to Information Rules, 2005 ବା ସୂଚନା ଅଧିକାର ଅଧିନିୟମ, ୨୦୦୫ ପ୍ରକାଶ କରାଯାଇ ରାଜ୍ୟ ସରକାରଙ୍କ ସମସ୍ତ ବିଭାଗ, ମୁଖ୍ୟ ଦପ୍ତର, ଜିଲ୍ଲା, ସବ୍‌ଡିଭିଜନ୍ ଓ ବ୍ଲକ୍‌ସ୍ତରୀୟ ଅଧିକାରୀଙ୍କୁ ଏ ବିଷୟରେ ବିଶେଷ ଅବଗତ କରାଇବା ପାଇଁ ବ୍ୟାପକ ଭାବେ ବଣ୍ଟନ କରାଯାଇଛି ।

ଯେଉଁ ସ୍ଥଳରେ ସେଣ୍ଟ୍ରାଲ୍ ପବ୍ଲିକ୍ ଇନ୍‌ଫରମେସନ୍ ଅଫିସର ବା ଷ୍ଟେଟ୍ ପବ୍ଲିକ୍ ଇନ୍‌ଫରମେସନ୍ ଅଫିସର ସୂଚନା ଦେବାକୁ କୁଣ୍ଠିତ ହୁଅନ୍ତି ବା ରୋକ୍‌ଠୋକ୍ ମନା କରି ଦିଅନ୍ତି, ଦରଖାସ୍ତ ଗ୍ରହଣ କରନ୍ତି ନାହିଁ କିମ୍ବା ଭୁଲ୍ ବା ବିଭ୍ରାନ୍ତିକର ତଥ୍ୟ ପ୍ରଦାନ କରନ୍ତି ବା ସତ୍ୟର ଅପଳାପ କରନ୍ତି, ସେ କ୍ଷେତ୍ରରେ ସେଣ୍ଟ୍ରାଲ୍ ପବ୍ଲିକ୍ ଇନ୍‌ଫରମେସନ୍ କମିଶନ ଓ ଷ୍ଟେଟ୍ ପବ୍ଲିକ୍ ଇନ୍‌ଫରମେସନ୍ କମିଶନ ଏବଂ ସୂଚନା ପ୍ରଦାନ ଅଧିକାରୀଙ୍କୁ ସୂଚନା ମାଗି ମାଗି ଥକି ପଡ଼ିଥିବା ନାଗରିକଙ୍କୁ କୌଣସି କ୍ଷେତ୍ରରେ ସଠିକ୍ ତଥ୍ୟ ପ୍ରଦାନ ନ କରନ୍ତି, ତେବେ ଯେଉଁ କ୍ଷେତ୍ରରେ ନାଗରିକ ସୂଚନା ପାଇପାରିନାହାନ୍ତି ବା ସୂଚନା ପ୍ରଦାନ କରା ନହୋଇଥାଏ, ସେହି କ୍ଷେତ୍ରରେ ଦାୟିତ୍ୱବୋଧ ନଥିବା ସୂଚନା ଅଧିକାରୀଙ୍କୁ ଦୈନିକ ୨୫୦ ଟଙ୍କା ଜୋରିମାନା ଦେବାକୁ ପଡ଼ିବ, ସେମାନେ ଯେତେ ଦିନ ପର୍ଯ୍ୟନ୍ତ ସୂଚନା ପ୍ରଦାନ ନ କରିଛନ୍ତି ଏବଂ ଏହା କୌଣସି କ୍ଷେତ୍ରରେ ୨୫ ହଜାର ଟଙ୍କାରୁ ଉର୍ଦ୍ଧ୍ୱ ହୋଇପାରିବ ନାହିଁ ।

ଦାରିଦ୍ର୍ୟ ସୀମାରେଖା ତଳେ ଯେଉଁ ନାଗରିକ ରହିଥିବେ, ସେମାନେ ସବୁ କାର୍ଯ୍ୟାଳୟରୁ ପବ୍ଲିକ୍ ଇନ୍‌ଫରମେସନ୍ ଅଫିସରଙ୍କଠାରୁ ସୂଚନା ପାଇପାରିବେ । ଏଥିପାଇଁ ତାଙ୍କୁ କୌଣସି ଦେୟ ଦେବାକୁ ପଡ଼ିବ ନାହିଁ କିନ୍ତୁ ସ୍ୱଚ୍ଛଳ ବର୍ଗ ନାଗରିକଙ୍କ ପାଇଁ ସେମାନେ ମାଗୁଥିବା ତଥ୍ୟ ବା ଡକ୍ୟୁମେଣ୍ଟ ପାଇଁ ତାଙ୍କୁ ୨୦ ଟଙ୍କା ଦେୟ ଦେବାକୁ ପଡ଼ିବ ।

**ସୂଚନା ପାଇବା ପାଇଁ କିପରି ଦରଖାସ୍ତ କରିବେ**

ସୂଚନା ଅଧିକାର ଧାରା ୬(୧) ଅଧିନିୟମ ପାଇଁ ନିମ୍ନଢାଞ୍ଚାରେ ସବୁ ନାଗରିକ ଆବେଦନ କରିବେ । ଏହା ପବ୍ଲିକ୍ ଇନ୍‌ଫରମେସନ୍ ଅଫିସର, ଯେଉଁ କାର୍ଯ୍ୟାଳୟରୁ ସେମାନଙ୍କୁ ସୂଚନା ପାଇବାକୁ ଥିବ ତାଙ୍କୁ ପ୍ରଥମେ ଦରଖାସ୍ତରେ ସମ୍ବୋଧନ କରିବେ । ଏହାଛଡ଼ା ଆବେଦନପତ୍ରର ନମୁନା ନିମ୍ନରେ ପ୍ରଦାନ କରାଗଲା ।

୧. ଦରଖାସ୍ତକାରୀଙ୍କ ପୂରା ନାମ

୨. ପିତା/ସ୍ୱାମୀଙ୍କ ନାମ

୩. ସ୍ଥାୟୀ ଠିକଣା

୪. ଦରଖାସ୍ତକାରୀଙ୍କ ଚିହ୍ନଟ (ଆଇଡେଣ୍ଟିଟି) ସମ୍ବନ୍ଧରେ ତଥ୍ୟ

୫. କେଉଁ ନିର୍ଦ୍ଦିଷ୍ଟ ସୂଚନା ସେ ଚାହୁଁଛନ୍ତି -

(କ) ସୂଚନାର ବିଷୟବସ୍ତୁ

(ଖ) କେଉଁ ସମୟର ସମ୍ବନ୍ଧୀୟ ସୂଚନା

(ଗ) ସୁନିର୍ଦ୍ଦିଷ୍ଟ ଭାବେ ନିର୍ଦ୍ଦିଷ୍ଟ ସୂଚନା ବିସ୍ତୃତ ଭାବେ ଚାହୁଁଥିବେ

(ଘ) ଡାକଦ୍ୱାରା ବା ବ୍ୟକ୍ତିଗତ ଭାବେ ସୂଚନା ଚାହୁଁଥିବେ, ତାହା ସେହି ଆବେଦନପତ୍ରରେ ଉଲ୍ଲେଖ କରିବେ (ସୂଚନା ପ୍ରଦାନ କରିବା ପାଇଁ ପ୍ରକୃତ ଡାକ ଦେୟ ସୂଚନା ପ୍ରଦାନ କରିବା ପାଇଁ ଅନ୍ତର୍ଭୁକ୍ତ ହେବ)

(ଙ) ଯଦି ଡାକ ମାଧ୍ୟମରେ ହୁଏ ତେବେ ତାହା ଉଲ୍ଲେଖ କରିବେ (ସାଧାରଣ, ରେଜିଷ୍ଟ୍ରି ଓ ସ୍ପିଡ୍ ପୋଷ୍ଟ ସମ୍ପର୍କରେ)

୬. କେଉଁ ଫର୍ମରେ ସୂଚନା ପ୍ରଦାନ କରାଯିବ ସେ ସମ୍ପର୍କରେ ସଠିକ୍ ଠିକଣା ପ୍ରଦାନ କରିବେ

୭. ପୂର୍ବରୁ ଏହି ସୂଚନା ପ୍ରଦାନ କରାଯାଇଛି କି ?

୮. ଏବମ୍ବିଧ ସୂଚନା ସର୍ବସାଧାରଣ କର୍ତ୍ତୃପକ୍ଷଙ୍କ ନିକଟରେ ଉପଲବ୍ଧ ହୋଇପାରୁନାହିଁ

୯. ଆପଣ ଏଥିପାଇଁ ଆବଶ୍ୟକ ହେଉଥିବା ଦେୟ ପ୍ରଦାନ କରିବା ପାଇଁ ସମ୍ମତ କି ?

୧୦. ଦରଖାସ୍ତ ପାଇଁ ଦେୟ ଆପଣ ଜମା କରିଛନ୍ତି କି ? (ଯଦି ହଁ ହୋଇଥାଏ ତେବେ ଜମା ସମ୍ପର୍କରେ ସବିସ୍ତୃତ ବିବରଣୀ ପ୍ରଦାନ କରିବେ)

୧୧. ଆପଣ ଦାରିଦ୍ର୍ୟ ସୀମାରେଖା ବର୍ଗର ଅଟନ୍ତି କି ? ଏ ସମ୍ବନ୍ଧରେ ସଠିକ୍ ପ୍ରମାଣପତ୍ର ପ୍ରଦାନ କରିଛନ୍ତି କି ?

ସ୍ଥାନ — ଦରଖାସ୍ତକାରୀଙ୍କ ପୂର୍ଣ୍ଣ ଦସ୍ତଖତ

ତାରିଖ — ଠିକଣା

**ସୂଚନା ପ୍ରଦାନ କରିବାକୁ କେତେ ଦେୟ / ପରିମାଣ ଦେବାକୁ ପଡ଼ିବ**

**ପ୍ରଥମ ଭାଗ**

୧. ସୂଚନା ପାଇବା ପାଇଁ ଦରଖାସ୍ତ ଫିସ୍ - ଟ.୨୦.୦୦ (କୋଡ଼ିଏ ଟଙ୍କା)

୨. ପ୍ରଥମ ଅପିଲ୍ ପାଇଁ ଦରଖାସ୍ତ ବାବଦକୁ - ଟ.୪୦.୦୦ (ଚାଳିଶ ଟଙ୍କା) କୋର୍ଟ ଫିସ୍ ଷ୍ଟାମ୍ପ ମାଧ୍ୟମରେ

୩. ଦ୍ୱିତୀୟ ଅପିଲ୍ ପାଇଁ ଦରଖାସ୍ତ ବାବଦକୁ - ଟ.୫୦.୦୦ (ପଚାଶ ଟଙ୍କା) କୋର୍ଟ ଫିସ୍ ଷ୍ଟାମ୍ପ ମାଧ୍ୟମରେ

**ଦ୍ୱିତୀୟ ଭାଗ**

ଡକ୍ୟୁମେଣ୍ଟ ନିରୀକ୍ଷଣ ପାଇଁ ନଗଦ ଟଙ୍କା ଆକାରରେ ଟ.୧୫.୦୦ ପ୍ରତ୍ୟେକ ଘଣ୍ଟା ବା ତା'ର ଫ୍ରାକ୍ସନ ପାଇଁ ଏ-୪ ସାଇଜ୍ ପେପର ପ୍ରତି ଫୋଲିଓ ପାଇଁ ଯଥା-

(କ) ଟାଇପ୍ କପି, ଫଟୋ କପି ପ୍ରତି ପୃଷ୍ଠା ପାଇଁ ନଗଦ ଆକାରରେ ଟ.୫.୦୦ ଦେବାକୁ ପଡ଼ିବ

(ଖ) କମ୍ପ୍ୟୁଟରରୁ ପ୍ରିଣ୍ଟ ଆଉଟ୍ ଫର୍ମ କାଢ଼ି କରି ଦେଲେ ନଗଦ ଆକାରରେ ଟ.୧୦.୦୦ ଦେବାକୁ ପଡ଼ିବ

(ଗ) ସିଡ଼ି କଭର୍ ସହିତ ପ୍ରତ୍ୟେକ ସିଡି ପାଇଁ ଟ.୧୦୦.୦୦ (ଏକଶତ ଟଙ୍କା)

(ଘ) ଫ୍ଲପିଡିସ୍କେଟ୍ (୧.୪୪ ଏମ୍.ବି.) ପାଇଁ ନଗଦ ଆକାରରେ ପ୍ରତ୍ୟେକ ଫ୍ଲପି ପାଇଁ ଟ.୧୦୦.୦୦ ଦେବାକୁ ପଡ଼ିବ ।

(ଙ) ମ୍ୟାପ୍ ଓ ଯୋଜନା ନକ୍ସା ପାଇଁ ନଗଦ ଆକାରରେ ଯାହା ପବ୍ଲିକ୍ ଇନ୍‌ଫରମେସନ୍ ଅଫିସର ବା ପି.ଆଇ.ଓ. ନିର୍ଦ୍ଧାରଣ କରିବେ । ଏଥିପାଇଁ ନିର୍ଭର କରୁଥିବା ଶ୍ରମ ଏବଂ ମ୍ୟାଟେରିଆଲ୍ (ବିଷୟବସ୍ତୁ) ଏବଂ ଇକ୍ୟୁପମେଣ୍ଟ ଓ ଆନୁଷଙ୍ଗିକ ଖର୍ଚ୍ଚ ପାଇଁ ଯାହା ନିର୍ଦ୍ଧାରଣ କରିବେ ।

(ଚ) ଭିଡ଼ିଓ କ୍ୟାସେଟ୍/ମାଇକ୍ରୋଫିଲମ୍/ମାଇକ୍ରୋଫିଚ୍ ପାଇଁ ନଗଦ ଆକାରରେ ଯାହା ପି.ଆଇ.ଓ. ନିର୍ଦ୍ଧାରଣ କରିବେ, ତାହା ଦେବାକୁ ପଡ଼ିବ ।

(ଛ) ପ୍ରମାଣୀକୃତ ସାମ୍ପୁଲ ଏବଂ ଆନୁଷଙ୍ଗିକ କାଗଜପତ୍ର ବା ମ୍ୟାଟେରିଆଲ୍ ନେବାକୁ ହେଲେ ପି.ଆଇ.ଓ. ଯେଉଁ ଦର ନିର୍ଦ୍ଧାରଣ କରିବେ, ତଦନୁସାରେ ନଗଦ ଆକାରରେ ଦେବାକୁ ପଡ଼ିବ ।

**ରାଜ୍ୟରେ ସୂଚନା ଅଧିକାର ଆଇନ-୨୦୦୫କୁ କାର୍ଯ୍ୟକାରୀ କରିବାରେ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ନିଆଯାଇଥିବା କେତେକ ସମୟୋଚିତ ପଦକ୍ଷେପ**

ମୁଖ୍ୟ ଶାସନ ସଚିବଙ୍କ ଅଧକ୍ଷତାରେ ଏହି ଆଇନ ସୁରୁଖୁରୁ ଭାବରେ କିପରି କାର୍ଯ୍ୟକାରୀ କରାଯିବ ଏବଂ ଆଇନ ଅନ୍ତର୍ଗତ ବିଭିନ୍ନ ବିଧିବ୍ୟବସ୍ଥାକୁ କିପରି ତ୍ୱରାନ୍ୱିତ କରାଯିବ ଓ ପବ୍ଲିକ୍ ଅଥରିଟି ସମସ୍ତ ବିଭାଗ, ମୁଖ୍ୟ ଦପ୍ତର, ଜିଲ୍ଲା, ସବ୍‌ଡିଭିଜନ୍, ବ୍ଲକ୍ ଓ ବେସରକାରୀ ବା ସ୍ୱେଚ୍ଛାସେବୀ ସଂସ୍ଥାଗୁଡ଼ିକରେ ଘୋଷଣା କରାଯିବ ସେଥିପାଇଁ ଏକ 'କୋର୍ କମିଟି' ଗଠନ କରାଯାଇଥିଲା । ପବ୍ଲିକ୍ ଇନ୍‌ଫର୍‌ମେସନ୍ ଅଫିସର/ଆସିଷ୍ଟାଣ୍ଟ ପବ୍ଲିକ୍ ଇନ୍‌ଫର୍‌ମେସନ ଏବଂ ଆପିଲେଟ ଅଥରିଟି ଘୋଷଣା କରାଇବା ସହିତ ଗୋପବନ୍ଧୁ ପ୍ରଶାସନିକ ଏକାଡେମୀରେ ଅକ୍ଟୋବର ୧୨ ତାରିଖ ପୂର୍ବରୁ ତାଲିମ୍ ପ୍ରଦାନ କରାଯାଇଥିଲା ।

ସୂଚନା ଅଧିକାର ଆଇନ-୨୦୦୫ ଧାରା ୨୭ ଅନୁସାରେ ରୁଲ୍ସ ବା ଅଧିନିୟମ ମୁଦ୍ରଣ ପ୍ରକାଶ କରାଯାଇ ବିଭିନ୍ନ ବିଭାଗଠାରୁ ଆରମ୍ଭ କରି ବ୍ଲକ୍ ଓ ପଞ୍ଚାୟତ ସ୍ତରରେ ଏହିସବୁ ପୁସ୍ତକ ଯୋଗାଇ ଦିଆଯାଇଛି ।

ଏହି ଆଇନର ଧାରା-୧୫ ଅନୁସାରେ ଓଡ଼ିଶା ଇନ୍‌ଫର୍‌ମେସନ କମିଶନ ଗଠନ କରାଯାଇଛି ଏବଂ ଶ୍ରୀ ଡି.ଏନ୍. ପାଢ଼ୀ, ଆଇ.ଏ.ଏସ୍.ଙ୍କୁ ମୁଖ୍ୟ ସୂଚନା କମିଶନର ଓ ପ୍ରଫେସର ରାଧାମୋହନଙ୍କୁ ସୂଚନା କମିଶନର ରୂପେ ମାନ୍ୟବର ରାଜ୍ୟପାଳ ନିଯୁକ୍ତି ପ୍ରଦାନ କରିଛନ୍ତି ଓ ସେମାନେ ଇତିମଧ୍ୟରେ ଅସ୍ଥାୟୀ କାର୍ଯ୍ୟାଳୟରେ ସେମାନଙ୍କର କାର୍ଯ୍ୟ ଆରମ୍ଭ କରିଛନ୍ତି । ବର୍ତ୍ତମାନ ଅସ୍ଥାୟୀ ଭାବେ ରାଜ୍ୟ ଅତିଥି ଭବନରେ ନଭେମ୍ବର ୨୦ ତାରିଖଠାରୁ ବିଭିନ୍ନ ଆପିଲ୍‌ର ତ୍ୱରିତ ଫଇସଲା ଓ ନାଗରିକମାନଙ୍କ ଅଭିଯୋଗ ଫଇସଲା କରିବାରେ ବ୍ୟସ୍ତ । ଓଡ଼ିଶା ସୂଚନା କମିଶନଙ୍କ ୱେବ୍‌ସାଇଟ୍ ଡିସେମ୍ବର ୨୦ ତାରିଖ ଦିନ ଆନୁଷ୍ଠାନିକ ଭାବେ ଉଦ୍‌ଘାଟିତ ହୋଇ ତାହାର କାର୍ଯ୍ୟ ଆରମ୍ଭ କରିଛି । ବର୍ତ୍ତମାନ ନାଗରିକମାନଙ୍କର ସୂଚନା ଅଧିକାର ପ୍ରଶସ୍ତ ହୋଇଗଲାଣି, ସେମାନେ ଯେଉଁ ତଥ୍ୟ ଏହି ୱେବ୍‌ସାଇଟ୍ ମାଧ୍ୟମରେ ପାଇପାରିବେ ତାହା ହେଉଛି- www.orissasoochanacommission.nic.in

ଯାହା ହେଉ, ଅକ୍ଟୋବର ୧୨, ୨୦୦୫ରୁ ଜାମ୍ମୁ ଓ କାଶ୍ମୀର ବ୍ୟତୀତ ଓଡ଼ିଶାରେ ଏହି ସୂଚନା ଅଧିକାର ଆଇନ ଲାଗୁ କରାଯାଇଛି । ନାଗରିକମାନଙ୍କ ସୂଚନା ଅଧିକାର ସାବ୍ୟସ୍ତ କରିବାକୁ ଓ ପ୍ରଶାସନରେ ସ୍ୱଚ୍ଛତା ଆଣିବାକୁ ଏହି ଆଇନ୍‌ର ସପକ୍ଷରେ ଓ ବିପକ୍ଷରେ ବହୁ ତର୍ଜମା ଜାରି ରହିଛି । ସପକ୍ଷରେ ଯୁକ୍ତି ଓ ସମାଲୋଚନା ସ୍ୱାଗତଯୋଗ୍ୟ । ଯେତେ ଏହାର ତର୍ଜମା କରାଯିବ, ତାହା ସ୍ଫଟିକ ପରି ସ୍ୱଚ୍ଛ ହୋଇ ଏକ ନିର୍ଦ୍ଧାରିତ ସିଦ୍ଧାନ୍ତରେ ଉପନୀତ ହେବ ।

ଡି.-୧୧, ବ୍ଲକ୍-୨
ଜୟଦେବ ବିହାର, ନୟାପଲ୍ଲୀ
ଭୁବନେଶ୍ୱର



# ଓଡ଼ିଶାରେ ସୂଚନା ଅଧିକାର ଆଇନ-୨୦୦୫

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

ସୂଚନା ଅଧିକାର ଆଇନ ବାସ୍ତବରେ ଏକ ଐତିହାସିକ ଆଇନ । ଏହି ଆଇନରେ ସାଧାରଣ ଲୋକଙ୍କୁ ସୂଚନା ଅଧିକାର ସଂକ୍ରାନ୍ତରେ ଅବଗତ କରାଇବା ପାଇଁ ଆଇନ ପ୍ରଣିତ ହୋଇଛି । ଏହି ଆଇନରେ ସରକାରୀ କର୍ତ୍ତୃପକ୍ଷଙ୍କଠାରୁ ସୂଚନା ହାସଲ କରିବା ଲାଗି ଜନସାଧାରଣଙ୍କୁ ଅଧିକାର ଦିଆଯାଇଛି ।

ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ ହେବା ଦ୍ୱାରା ଶାସନ ପ୍ରକ୍ରିୟାର ପ୍ରତ୍ୟେକ ସ୍ତରରେ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ନିମନ୍ତେ ସରକାର ଗୁରୁତ୍ୱାରୋପ କରୁଛନ୍ତି । ପ୍ରଶାସନରେ ସାଧାରଣ ଲୋକମାନଙ୍କୁ ଯେଭଳି ସର୍ବାଧିକ ସୁବିଧା ସୁଯୋଗ ମିଳିପାରିବ, ସେଥିପାଇଁ ଏକ ଦାୟିତ୍ୱ ସଂପନ୍ନ ପ୍ରଶାସନ ପାଇଁ ସରକାର ପ୍ରାଧାନ୍ୟ ଦେଉଛନ୍ତି ବୋଲି ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ପ୍ରକାଶ କରିଛନ୍ତି । ନିକଟରେ ବିଧାନସଭାର ବିଧାୟକମାନଙ୍କ ପାଇଁ ଆୟୋଜିତ ସୂଚନା ଅଧିକାର ସଂପର୍କିତ କର୍ମଶାଳାକୁ ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, ସରକାରଙ୍କର ଯେକୌଣସି ବିଭାଗ ବିରୋଧରେ ଯେତେବେଳେ ଆପତ୍ତି ଅଭିଯୋଗ ଆସିଛି, ଆବଶ୍ୟକ ବା ଆଇନଗତ କାର୍ଯ୍ୟାନୁଷ୍ଠାନ ପାଇଁ ସରକାର କେବେ ବି ଦ୍ୱିଧା ପ୍ରକାଶ କରିନାହାନ୍ତି ଏବଂ ଏହି ପଦକ୍ଷେପ ଜାରି ରହିବା ସହିତ ଦୁର୍ନୀତି ବିରୋଧରେ ସରକାରଙ୍କ ଅଭିଯାନ ଆହୁରି ଜୋର୍‌ଦାର୍ ହେବ । ସୂଚନା ଅଧିକାର ଆଇନର ସୁଫଳ ଯେଭଳି ସାଧାରଣ ଲୋକମାନଙ୍କ ପାଖରେ ପହଞ୍ଚି ପାରିବ, ସେଥିନିମନ୍ତେ ସରକାର ସବୁପ୍ରକାର ଉଦ୍ୟମ କରିବେ ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିଛନ୍ତି ।

ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ ହେବା ଫଳରେ ଶାସନର ମାନ ବୃଦ୍ଧି ଘଟିବା ସହିତ ସରକାରୀ କାର୍ଯ୍ୟ ପ୍ରଣାଳୀରେ ପରିବର୍ତ୍ତନ ଘଟିବ ଓ ଦୁର୍ନୀତିକୁ ରୋକାଯାଇ ପାରିବ ବୋଲି ଓଡ଼ିଶା ବିଧାନସଭାର ମାନ୍ୟବର ବାଚସ୍ପତି ଶ୍ରୀଯୁକ୍ତ ମହେଶ୍ୱର ମହାନ୍ତି ମତବ୍ୟକ୍ତ କରିଛନ୍ତି । ଏହା ଏକ ଲୋକାଭିମୁଖୀ ଆଇନ ଓ ପ୍ରଶାସନିକ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ପାଇଁ ଏହା ସହାୟକ ହୋଇପାରିବ । ଏହି ଆଇନ ଫଳରେ ଗଣମାଧ୍ୟମ ସରକାରଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ସଂପର୍କରେ ନିର୍ଭୁଲ ତଥ୍ୟ ପରିବେଷଣ କରିବାକୁ ସମର୍ଥ ହେବ । ଏହି ଆଇନର ପରିସୀମା ଓ ପ୍ରଭାବ ବ୍ୟାପକ ଓ ଭବିଷ୍ୟତରେ ସମୟର ଆବଶ୍ୟକତା ଦୃଷ୍ଟିରୁ ଏହାର ସଂଶୋଧନ କରାଯାଇ ଏହାକୁ ଆହୁରି କ୍ରିୟାଶୀଳ କରାଯାଇ ପାରିବ ବୋଲି ମାନ୍ୟବର ବାଚସ୍ପତି ମତ ପ୍ରକାଶ କରିଛନ୍ତି । ସୂଚନା ଅଧିକାର ଆଇନ ଗଣତାନ୍ତ୍ରିକ ପରମ୍ପରାକୁ ସମୃଦ୍ଧ କରିବା ସହ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଶାଣିତ କରିବାକୁ ସମର୍ଥ ହେବ ବୋଲି ଆଇନ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱଭୂଷଣ ହରିଚନ୍ଦନ ତାଙ୍କ ଅଭିମତ ପ୍ରକାଶ କରିଛନ୍ତି । ସୂଚନା ଅଧିକାର ଆଇନ ମାଧ୍ୟମରେ ପ୍ରଶାସନରେ ସାଧାରଣ ଲୋକମାନଙ୍କର ସହଭାଗିତା କରିବ ଓ ସାଧାରଣ ଲୋକମାନଙ୍କର ସମସ୍ୟା ସମାଧାନରେ ଏହା ସହାୟକ ହେବ ବୋଲି ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଏବଂ ଯୁବ ସେବା ମନ୍ତ୍ରୀ ଶ୍ରୀଯୁକ୍ତ ଦେବାଶିଷ ନାୟକ ମତ ପ୍ରକାଶ କରିଛନ୍ତି । ମୁଖ୍ୟ ଶାସନ ସଚିବ ଡକ୍ଟର ସୁବାସ ପାଣି ସୂଚନା ଅଧିକାର ଆଇନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ ସୂଚନା ଦେଇ ଏହାର କାର୍ଯ୍ୟକାରିତା ପାଇଁ ବ୍ୟାପକ ଜନସଚେତନତା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଅମଲାତନ୍ତ୍ରର ମାନସିକତାରେ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ ଓ ସୂଚନା ଅଧିକାର ଆଇନ ସାଧାରଣ ଲୋକମାନଙ୍କର ସୁବିଧାକୁ ଦୃଷ୍ଟିରେ ରଖି ତିଆରି କରାଯାଇଛି ବୋଲି ପଞ୍ଚାୟତିରାଜ ମନ୍ତ୍ରୀ ଡା. ଦାମୋଦର ରାଉତ ମତବ୍ୟକ୍ତ କରିଛନ୍ତି ।

ସୂଚନା ଅଧିକାର ଅଧିନିୟମ, ୨୦୦୫ ରାଜ୍ୟରେ ଅକ୍ଟୋବର ୧୨,୨୦୦୫ରୁ କାର୍ଯ୍ୟକାରୀ ହେଉଛି । ପ୍ରଶାସନକୁ ଅଧିକ ସ୍ୱଚ୍ଛ ଓ ଉତ୍ତରଦାୟୀ କରିବା ଏହି ଆଇନର ମୂଳଲକ୍ଷ୍ୟ । ଏହି ଅଧିନିୟମ ଦ୍ୱାରା ଜନସାଧାରଣଙ୍କର ସୂଚନା ପାଇବାର ଅଧିକାର ସାବ୍ୟସ୍ତ ହେଲା । ଏହାଦ୍ୱାରା ସରକାରୀ କାର୍ଯ୍ୟାଳୟ/ଅନୁଷ୍ଠାନମାନଙ୍କରୁ ଜନସାଧାରଣ ଆବଶ୍ୟକ ତଥ୍ୟ ହାସଲ କରିପାରିବେ । ତଥ୍ୟ ହାସଲ ନିମନ୍ତେ ଇଚ୍ଛୁକ ବ୍ୟକ୍ତି ସରକାରୀ କାର୍ଯ୍ୟାଳୟ/ଅନୁଷ୍ଠାନରେ ସଂପୃକ୍ତ ଜନସୂଚନା ଅଧିକାରୀଙ୍କୁ ସାକ୍ଷାତ କରି ନିର୍ଦ୍ଧାରିତ ଫର୍ମରେ ତଥ୍ୟ ପ୍ରଦାନ ନିମନ୍ତେ ଆବେଦନ କରିପାରିବେ । ଆବେଦନକାରୀଙ୍କୁ ସୁଲଭ ମୂଲ୍ୟରେ ତଥ୍ୟ ଯୋଗାଇ ଦିଆଯିବ । ଏହି ନିୟମ ବଳରେ ଜନସାଧାରଣ ନିର୍ଦ୍ଦିଷ୍ଟ

ସମୟସୀମା ମଧ୍ୟରେ ତଥ୍ୟ ପାଇପାରିବେ । ଆବେଦନ କ୍ରମେ କୌଣସି ନଥିପତ୍ର, ପାଣ୍ଡୁଲିପି ଏବଂ ଦଲିଲ୍ ଦସ୍ତାବିଜ୍‌ର ଅବିକଳ ନକଲ ପାଇପାରିବେ । ଯେଉଁଠାରେ ସଂପୃକ୍ତ ସୂଚନା କମ୍ପ୍ୟୁଟର ଅଥବା ଅନ୍ୟ କୌଣସି ଯନ୍ତ୍ର କୌଶଳରେ ସଂଗ୍ରହ କରାଯାଇ ରଖାଯାଇଥିବ, ସେପରି କ୍ଷେତ୍ରରେ ଡିସ୍କ, ଫ୍ଲପି, ଟେପ୍, ଭିଡ଼ିଓ, କ୍ୟାସେଟ୍ ବା ଅନ୍ୟକୌଣସି ଇଲେକ୍‌ଟ୍ରୋନିକ୍ସ ମାଧ୍ୟମରେ ଏହି ସୂଚନାକୁ ହାସଲ କରାଯାଇପାରିବ । ଏହି ଆଇନର ଧାରା-୩ରେ ଦେଶର ସବୁନାଗରିକଙ୍କୁ ତଥ୍ୟ ଜାଣିବାର (ସୂଚନା ଅଧିକାର) ଅଧିକାର ଦିଆଗଲା ବୋଲି ଘୋଷଣା କରାଯାଇଛି । ଧାରା-୪ରେ ସାଧାରଣ କର୍ତ୍ତୃପକ୍ଷ (ପବ୍ଲିକ ଅଥରିଟି)ଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ସଂପର୍କରେ କୁହାଯାଇଛି ଯେ, (କ) ପ୍ରତ୍ୟେକ ସାଧାରଣ କର୍ତ୍ତୃପକ୍ଷ ସୂଚୀପତ୍ର ସହ ତାଙ୍କ ଅଧୀନରେ ଥିବା ନଥିପତ୍ର ସବୁକୁ ଶୃଙ୍ଖଳିତ ଭାବେ ତାଲିକାଭୁକ୍ତ କରି ଏପରି ଭାବେ ସଜାଡ଼ି ରଖିବେ ଯେ, ଯେପରି ଏହି ଆଇନ ଅନୁସାରେ ସହଜରେ ତଥ୍ୟ ମିଳିପାରିବ ଓ ସମ୍ବଳ ମିଳିଲେ ଏକ ଯୁକ୍ତିଯୁକ୍ତ ସମୟ ମଧ୍ୟରେ ତାହା କମ୍ପ୍ୟୁଟରୀକରଣ କରାଯାଇ ବିବିଧ ପ୍ରଣାଳୀରେ ସାରା ଦେଶକୁ ଉପଲବ୍ଧ ହେବ । ଏହାର ଧାରା-୫ରେ ସୂଚନା ଅଧିକାରୀଙ୍କ ନିଯୁକ୍ତି ସମ୍ବନ୍ଧରେ କୁହାଯାଇଥିବା ବେଳେ ଧାରା-୬ରେ ତଥ୍ୟ ପାଇବାକୁ କିପରି ଆବେଦନ କରିବାକୁ ହେବ ତାହା କୁହାଯାଇଛି । ଏହାର ଧାରା-୭ରେ ତଥ୍ୟ ଜାଣିବାକୁ ଆବେଦନ ଉପରେ ମୀମାଂସା କରିବାର ପଦ୍ଧତି ନିର୍ଣ୍ଣିତ ହୋଇଛି । ଆବେଦନ କରିବାର ୩୦ ଦିନ ମଧ୍ୟରେ ଜନସୂଚନା ଅଧିକାରୀ ତଥ୍ୟ ଯୋଗାଇବେ । ନତୁବା ଧାରା-୮ କିମ୍ବା ୯ ଅନୁସାରେ ଆବେଦନକୁ ଅଗ୍ରାହ୍ୟ କରିପାରିବେ । ଯଦି ସେ ତଥ୍ୟ ଜଣଙ୍କର ଜୀବନ ଓ ମୁକ୍ତି ପାଇଁ ସଂପୃକ୍ତ ଥାଏ, ତା'ହେଲେ ୪୮ ଘଣ୍ଟା ଭିତରେ ଦେବାକୁ ହେବ । ଯେଉଁ ତଥ୍ୟଗୁଡ଼ିକ ସୂଚନା ଅଧିକାରରୁ ବାଦ ଦିଆଯାଇଛି, ସେଗୁଡ଼ିକ ଧାରା-୮ରେ ଉଲ୍ଲେଖ ହୋଇଛି । (କ) ଯେଉଁ ତଥ୍ୟଗୁଡ଼ିକ ଦେଶର ଅଖଣ୍ଡତା ଓ ସାର୍ବଭୌମତ୍ୱ ପ୍ରତି ବିପଦ ସୃଷ୍ଟି କରୁଥିବ, କାରିଗରୀ କୌଶଳ, ବିଜ୍ଞାନ କିମ୍ବା ଅର୍ଥନୈତିକ ସ୍ୱାର୍ଥ ହାନି କରିବ, ବାହାର ଦେଶ ସହିତ ସଂପର୍କ ଅଥବା କୌଣସି ଅପରାଧ ପାଇଁ ପ୍ରରୋଚିତ କରିବ, (ଖ) ଯେଉଁ ତଥ୍ୟ ପ୍ରକାଶନରେ ଅଦାଲତ ଅବମାନନା ହେବ ବା ଅଦାଲତ ବା ନ୍ୟାୟାଧିକରଣ ଯେଉଁ ତଥ୍ୟଗୁଡ଼ିକୁ ପ୍ରକାଶ ପାଇଁ ବାରଣ କରୁଥିବ, (ଗ) ଯେଉଁ ତଥ୍ୟ ବ୍ୟବସ୍ଥା ସଭା ବା ବିଧାନସଭାରେ ସ୍ୱାଧୀକାର ଭଙ୍ଗ କରୁଥିବ, (ଘ) ଯେଉଁ ତଥ୍ୟ ବାଣିଜ୍ୟିକ ଗୋପନୀୟତା, ପ୍ରତିଭା ସଂପଦ, ବ୍ୟବସାୟିକ ବିଶ୍ୱସନୀୟତା ପ୍ରତି କ୍ଷତିକାରକ ହେବ, (ଙ) ଯେଉଁ ତଥ୍ୟ ଜଣଙ୍କର ଟ୍ରଷ୍ଟି ସଂପର୍କ ଉପରେ ପ୍ରତିଷ୍ଠିତ, (ଚ) ବର୍ହିଦେଶ ସରକାରର ପ୍ରାପ୍ତ ଗୋପନୀୟ ତଥ୍ୟ, (ଛ) କୌଣସି ବ୍ୟକ୍ତିର ଜୀବନ ପ୍ରତି ବିପଦ ସୃଷ୍ଟିକାରୀ ତଥ୍ୟ, (ଜ) ଯେଉଁ ତଥ୍ୟ ଅପରାଧୀଙ୍କର ତଦନ୍ତ, ଗିରଫ ଓ ବିଚାରରେ ବାଧା ସୃଷ୍ଟି କରିବ, (ଝ) ମନ୍ତ୍ରୀ ପରିଷଦର କାଗଜପତ୍ର (ମନ୍ତ୍ରୀ ଓ ଅଧିକାରୀମାନଙ୍କର କଥୋପକଥନର ରେକର୍ଡ଼ ଏହା ସହିତ ଅନ୍ତର୍ଭୁକ୍ତ) ସମ୍ବନ୍ଧରେ କୌଣସି ତଥ୍ୟ, (ଞ) କୌଣସି ତଥ୍ୟ ଯଦି ସାଧାରଣ ସ୍ୱାର୍ଥ ସାଧନ ନକରି ବରଂ ଏହା କୌଣସି ବ୍ୟକ୍ତିର ଗୋପନୀୟତାକୁ କ୍ଷୁଣ୍ଣ କରୁଥାଏ, ଏସବୁ କ୍ଷେତ୍ରରେ ତଥ୍ୟ ଦିଆଯାଇପାରିବ ନାହିଁ । ଧାରା-୧୦ରେ ଗୋଟିଏ ବିଷୟ ଉପରେ ସଂପୂର୍ଣ୍ଣ ନ ହେଲେ ବି ପୃଥକ୍ କରି ତଥ୍ୟର କେତେକ ଅଂଶ ଦିଆଯାଇପାରେ ଧାରା-୧୧ରେ ଯେଉଁ ତୃତୀୟପକ୍ଷ କଥା କୁହାଯାଇଛି, ତାହା ହେଉଛି ସେହି ବ୍ୟକ୍ତି ଯାହାଦ୍ୱାରା ସେ ତଥ୍ୟ ମିଳିଛି ଓ ତାହା ଗୋପନୀୟ ହୋଇଥିବାରୁ ସେ ତଥ୍ୟଟି ଆଉ କାହାକୁ ଦେବା ପୂର୍ବରୁ ତୃତୀୟ ପକ୍ଷରୁ ମତାମତ ନିଆଯିବ । ଏହାର ଧାରା-୨୦ରେ ସୂଚନା ଅଧିକାରୀ ଦୋଷୀ ସାବ୍ୟସ୍ତ ହେଲେ ସୂଚନା ଆୟୁକ୍ତଙ୍କ ଦ୍ୱାରା ଅର୍ଥଦଣ୍ଡରେ ଦଣ୍ଡିତ ହେବେ ।

ଗତ ଅକ୍ଟୋବର ମାସରୁ ଆରମ୍ଭ ହୋଇଥିବା ସୂଚନା ଅଧିକାର ଅଧିନିୟମ ପ୍ରଶାସନର ସମସ୍ତ ସ୍ତରରେ କାର୍ଯ୍ୟ ଆରମ୍ଭ କରିଛି । ରାଜ୍ୟ ସରକାରଙ୍କର ବିଭିନ୍ନ ବିଭାଗ ବିଷୟରେ ତଥ୍ୟ ଜାଣିବା ପାଇଁ ଓଡ଼ିଶା ସଚିବାଳୟରେ ଥିବା ଅଭ୍ୟର୍ଥନା ପ୍ରକୋଷ୍ଠ ମଧ୍ୟରେ ଆର୍.ଟି.ଆଇ. ସେଲ୍‌ରେ ଆବେଦନପତ୍ର ଗ୍ରହଣ କରାଯାଉଛି । ବିଭିନ୍ନ ବିଭାଗ ନିମନ୍ତେ ଜାନୁଆରୀ, ୨୦୦୬ ସୁଦ୍ଧା ଏହି କାଉଣ୍ଟରରେ ସମୁଦାୟ ୩୧୦ଟି ଆବେଦନପତ୍ର ମିଳିଛି । ସଚିବାଳୟର ଆର୍.ଟି.ଆଇ. ସେଲ୍‌ରେ ଓଡ଼ିଶା ସୂଚନା ସେବାର ଜଣେ ବରିଷ୍ଠ ଓ ଜଣେ କନିଷ୍ଠ ଅଧିକାରୀ କାର୍ଯ୍ୟ କରୁଛନ୍ତି । ସେହିପରି ବିଭିନ୍ନ ବିଭାଗ ପାଇଁ ଜଣେ ପି.ଆଇ.ଓ., ଏ.ପି.ଆଇ.ଓ. ଓ ଆପିଲେଟ୍ ଅଥରିଟି ରହିଛନ୍ତି ।

ଜଣେ ଆବେଦନକାରୀ ନିର୍ଦ୍ଧାରିତ ଫର୍ମ ପୂରଣ କରି ନିଜର ପରିଚୟପତ୍ରର ଗୋଟିଏ ନକଲ କପି ସହିତ କୋଡ଼ିଏ ଟଙ୍କା ଦାଖଲ କରି ମନି ରିସିପ୍‌ଟ ଓ ଆକ୍‌ନୋଲୋଜିମେଣ୍ଟ ପି.ଆଇ.ଓ.ଙ୍କଠାରୁ ଗ୍ରହଣ କରିବେ । ତିରିଶ ଦିନ ମଧ୍ୟରେ ଯଦି ଆବେଦନକାରୀଙ୍କୁ କୌଣସି ତଥ୍ୟ ସୂଚନା ନ ମିଳେ କିମ୍ବା ସେ ସୂଚନାରେ ସନ୍ତୁଷ୍ଟ ନୁହନ୍ତି, ତେବେ ସେ ସେହି ବିଭାଗରେ ଅପିଲ (୪୦ ଟଙ୍କାର ଷ୍ଟାମ୍ ଫି) ଏକ ଅଲଗା ଫର୍ମରେ କରିପାରିବେ । ଆବେଦନକାରୀ ଯଦି ଦ୍ୱିତୀୟ ଅପିଲରେ ମଧ୍ୟ ସନ୍ତୁଷ୍ଟ ନୁହନ୍ତି ତେବେ ସେ ସୂଚନା କମିଶନଙ୍କ ନିକଟରେ ତୃତୀୟ ଅପିଲ କରିପାରିବେ । ଓଡ଼ିଶା ସରକାରଙ୍କ ସୂଚନା କମିଶନ କାର୍ଯ୍ୟାଳୟଟି ରାଜ୍ୟ ଅତିଥି ଭବନରେ କାର୍ଯ୍ୟ କରୁଛି । ଏହି କାର୍ଯ୍ୟାଳୟରେ ମୁଖ୍ୟ ସୂଚନା କମିଶନର ଶ୍ରୀଯୁକ୍ତ ଡି.ଏନ୍. ପାଢ଼ୀ ଓ ସୂଚନା କମିଶନ ପ୍ରଫେସର ରାଧାମୋହନ କାର୍ଯ୍ୟ କରୁଛନ୍ତି । ଓଡ଼ିଶା ସୂଚନା କମିଶନର ୱେବ୍‌ସାଇଟ ହେଉଛି www.orissasoochanacommission.nic.in । ୱେବ୍‌ସାଇଟ୍ ମାଧ୍ୟମରେ ଯେଉଁମାନେ ସୂଚନା ଚାହିଁବେ, ସେମାନେ ପାଇପାରିବେ ।

ସୂଚନା ଅଧିକାର ଆଇନରେ ନାଗରିକଙ୍କର ସାର୍ବଭୌମତ୍ୱକୁ ଅଗ୍ରାଧିକାର ଦିଆଯାଇ ଦେଶର ସାଧାରଣ ଜନତାଙ୍କୁ ସଶକ୍ତିକରଣ ନିମନ୍ତେ କେନ୍ଦ୍ର ସରକାରଙ୍କ ପକ୍ଷରୁ ପ୍ରଚେଷ୍ଟା କରାଯାଇଛି । ସାଧାରଣ ନାଗରିକଙ୍କୁ ସୂଚନା ଅଧିକାର ମିଳିବା ଫଳରେ ଜଣେ ଦରିଦ୍ର ହିତାଧିକାରୀ ସରକାରଙ୍କର ଯୋଜନା ଓ କାର୍ଯ୍ୟକ୍ରମ ସଂପର୍କରେ ଯେକୌଣସି ତଥ୍ୟ ପାଇପାରିବେ । ଏହି ସ୍ୱାଗତଯୋଗ୍ୟ ପଦକ୍ଷେପ ଫଳରେ ଗଣତାନ୍ତ୍ରିକ ଓ ସରକାରୀ ପ୍ରକ୍ରିୟାରେ ଜନସାଧାରଣଙ୍କର ଅଂଶଗ୍ରହଣ ଅର୍ଥପୂର୍ଣ୍ଣ ହୋଇପାରିବ । ତଥ୍ୟ ପାଇବାର ସୁବିଧା ଓ ସୁଯୋଗ ଉତ୍ତମ ଶାସନ ପରିଚାଳନା, ସ୍ୱଚ୍ଛତା ଓ ଦାୟିତ୍ୱବୋଧତା ପାଇଁ ନିଶ୍ଚିତ ଭାବେ ଭିତ୍ତିଭୂମି ଯୋଗାଇବ । ଦେଶର ପ୍ରତ୍ୟେକ ନାଗରିକ ଏହି ଆଇନର ସମସ୍ତ ସୁବିଧା ସୁଯୋଗ ଉପଲବ୍ଧ କରିବା ଜରୁରୀ ।

**ପାଦଟୀକା :**

୧. Orissa Right to Information Act, 2005.

୨. Orissa Right to Information Rules, 2005.

୩. ସୂଚନା ଅଧିକାର ଆଇନ-୨୦୦୫, ସଂକଳକ ଉପଭୋକ୍ତା ମହାସଂଘ, ଓଡ଼ିଶା ।

୪. ପ୍ରବନ୍ଧ- 'ସୂଚନା ଅଧିକାର ଉଲ୍ଲଙ୍ଘନ ପାଇଁ ଦଣ୍ଡ', ଦୈନିକ ସମାଜ - ଲେଖକ ଶ୍ରୀ ଗଗନ ଚନ୍ଦ୍ର ମେହେର ।

୫. ପ୍ରବନ୍ଧ- 'ସୂଚନା ଅଧିକାର, ଉପଲବ୍ଧତା, ବିବିଧତା ଏବଂ ପ୍ରତିନିଧିତ୍ୱ ପ୍ରଶ୍ନ', କଳ୍ପନା କାନ୍ନାବିରନ, ମାସିକ ପତ୍ରିକା- ଯୋଜନା, ଜାନୁଆରୀ-୨୦୦୬ ।

୬. ପ୍ରବନ୍ଧ- 'ସୂଚନା ଅଧିକାର: ଆକାଂକ୍ଷା ଓ ଆହ୍ୱାନ' - ଅରବିନ୍ଦ କେଜରୀ ୱାଲ, ଯୋଜନା, ଜାନୁଆରୀ-୨୦୦୬ ।

କ୍ୱାର୍ଟରସ୍ ନଂ- ଆଇ.ଭି.-୪୨/୨
ୟୁନିଟ୍-୧, ଭୁବନେଶ୍ୱର

## ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନାରେ ୭୭୯.୦୨ ଲକ୍ଷ ଶ୍ରମ ଦିବସ ୨୦୦୬, ଜାନୁଆରୀ ସୁଦ୍ଧା ସୃଷ୍ଟି ହୋଇପାରିଛି

ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନାରେ ଚଳିତ ବର୍ଷ ଜାନୁଆରୀ ମାସ ଶେଷସୁଦ୍ଧା ରାଜ୍ୟରେ ୪୩୧୦୦.୩୭ ଲକ୍ଷ ଟଙ୍କା ମଧ୍ୟରୁ ୨୭୨୬୭.୮୯ ଲକ୍ଷ ଟଙ୍କା ବ୍ୟୟ କରାଯାଇ ୭୭୯.୦୨ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇପାରିଛି । ରାଜ୍ୟର ୩୦ ଗୋଟି ଜିଲ୍ଲାରେ ୧.୪.୦୫ ସୁଦ୍ଧା ୧୬୮୦.୬୨ ଲକ୍ଷ ଟଙ୍କା ଗଚ୍ଛିତ ଥିବାବେଳେ କେନ୍ଦ୍ର ସରକାରଙ୍କ ତରଫରୁ ୩୧୬୮୮.୧୩ ଲକ୍ଷ ଟଙ୍କା, ରାଜ୍ୟ ସରକାରଙ୍କ ତରଫରୁ ୯୬୭୬.୨୬ ଲକ୍ଷ ଟଙ୍କା ଏବଂ ଅନ୍ୟାନ୍ୟ ଟଙ୍କାକୁ ମିଶାଇ ୪୩୧୦୦.୩୨ ଲକ୍ଷ ଟଙ୍କା ଏହି ଯୋଜନାରେ ରଖାଯାଇଛି ।

ରାଜ୍ୟରେ ଜାନୁଆରୀ ୦୬ ସୁଦ୍ଧା ୧୧୬.୩୩ ଲକ୍ଷ ଅନୁସୂଚିତ ଜାତି, ୧୬୨.୦୫ ଲକ୍ଷ ଅନୁସୂଚିତ ଜନଜାତି, ୧୬୫.୪୯ ଲକ୍ଷ ଅନ୍ୟ ବର୍ଗର ଲୋକମାନଙ୍କୁ, ୧୮୯.୬୨ ଲକ୍ଷ ଭୂମିହୀନମାନଙ୍କୁ, ୧୪୫.୦୯ ଲକ୍ଷ ମହିଳା ଏବଂ ୦.୪୪ ଲକ୍ଷ ଅକ୍ଷମମାନଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇ ୭୭୯.୦୨ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇପାରିଛି ।

ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନାରେ ଜାନୁଆରୀ ୬ ଶେଷ ସୁଦ୍ଧା ଯୋଗାଇ ଦିଆଯାଇଥିବା ଅର୍ଥର ୬୪ ପ୍ରତିଶତ ଭାଗ ଅର୍ଥ ଖର୍ଚ୍ଚ କରାଯାଇପାରିଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି । ଅବଶିଷ୍ଟ ଅର୍ଥ ଚଳିତ ଆର୍ଥିକ ବର୍ଷରେ ତୁରନ୍ତ ବିନିଯୋଗ କରାଯାଇ ବିନିଯୋଗପତ୍ର ଦେବା ପାଇଁ ବିଭାଗୀୟ ଅଧିକାରୀମାନଙ୍କୁ ପଞ୍ଚାୟତିରାଜ ବିଭାଗ କମିଶନର ତଥା ଶାସନ ସଚିବଙ୍କ ତରଫରୁ ନିର୍ଦ୍ଦେଶ ଦିଆଯାଇଛି ।

# ୟୁରୋପରେ ସୂଚନା ଅଧିକାର

ଅଦ୍ୱୈତ ପ୍ରସାଦ ବିଶ୍ୱାଳ

**ଗ**ତ ବର୍ଷ ମେ ମାସରେ ସୂଚନା ଜାଣିବାର ଅଧିକାର ବିଲ୍‌କୁ ପାର୍ଲାମେଣ୍ଟ ଗ୍ରହଣ କରି ନେଇଛି । ଏହା ଉପରେ ଆଲୋଚନାର ଉତ୍ତର ଦେଇ ପ୍ରଧାନମନ୍ତ୍ରୀ କହିଥିଲେ ଯେ ଏହି ଅଧିକାର ଗଣତନ୍ତ୍ରକୁ ଶକ୍ତିଶାଳୀ କରିବାରେ ସହାୟକ ହେବ । ଏହାଦ୍ୱାରା ପ୍ରଶାସନ ଅଚଳ ହୋଇଯିବ ବୋଲି ପ୍ରକାଶ ପାଉଥିବା ଆଶଙ୍କା ଅମୂଳକ ବରଂ ଏହା ଦ୍ୱାରା ପ୍ରଶାସନ ସ୍ୱଚ୍ଛ ହେବ । ସୂଚନା ଅଧିକାର ବିଲ୍‌କୁ ରାଷ୍ଟ୍ରପତି ଡଃ ଏ.ପି.ଜେ. ଅବଦୁଲ କଲାମ ସ୍ୱୀକୃତି ଦେଇଥିଲେ ମଧ୍ୟ ରାଜ୍ୟର ମୁଖ୍ୟ ଓ ସରକାରଙ୍କ ମଧ୍ୟରେ ଥିବା ସମ୍ବନ୍ଧ ଗୁପ୍ତ ରହିବ ବୋଲି ପ୍ରସ୍ତାବ ଦେଇଛନ୍ତି । ଏହି ବିଲ୍ କାର୍ଯ୍ୟକାରୀ ହେଲେ ସମସ୍ତ ସରକାରୀ ଅଧିକାରୀ ସେମାନଙ୍କ କାର୍ଯ୍ୟ ଉପରେ ନାଗରିକଙ୍କୁ ସୂଚନା ଦେବାକୁ ବାଧ୍ୟ ହେବେ । ଏହାଦ୍ୱାରା ଶାସନରେ ସ୍ୱଚ୍ଛତା ସହିତ, ଉତ୍ତରଦାୟିତ୍ୱ ବୃଦ୍ଧି ପାଇବ ବୋଲି ଆଶା କରାଯାଉଛି ।

ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଏବଂ ଏହାର ସମ୍ବିଧାନ ନାଗରିକମାନଙ୍କୁ ସ୍ୱାଧୀନ ମତ ପ୍ରକାଶ କରିବାର ଅଧିକାର ଦେଇଛି । ଏହା ସତ୍ତ୍ୱେ ଦେଶ ସ୍ୱାଧୀନ ହେବାର ୫୮ ବର୍ଷ ପରେ ମଧ୍ୟ ନାଗରିକମାନେ ସରକାର, ପ୍ରଶାସକମାନେ କ'ଣ କରୁଛନ୍ତି ସେ ସଂପର୍କରେ ତଥ୍ୟ ଜାଣିବାର ଅଧିକାର ପାଇ ନଥିଲେ । ଏହି ଆଇନ ପ୍ରଣୟନ ହେବା ଦ୍ୱାରା ନାଗରିକମାନେ ସୂଚନା ଓ ତଥ୍ୟ ଜାଣିବା ପାଇଁ ଶାସନର ମର୍ଜି ବା ଇଚ୍ଛା ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । ଏହି ଆଇନର କାର୍ଯ୍ୟକାରିତା କିପରି ହେଉଛି ତାହା ସମୟ କହିବ । ଦେଶର ବହୁ ଆଇନ ପରି ଏହା ଯେ କିଛି ବର୍ଷ ପରେ ପ୍ରଶାସନ ଦ୍ୱାରା ଅକାମୀ କରି ଦିଆନଯିବ କହିବା କଷ୍ଟକର ।

ତଥ୍ୟ ଜାଣିବାର ଅଧିକାର ବିଷୟରେ ସ୍ୱିଡ଼େନ୍ ହେଉଛି ବିଶ୍ୱର ଆଦର୍ଶ । ସେଠାରେ ୧୭୬୬ ମସିହାରେ 'ଲ ଅଫ୍ ପବ୍ଲିକ୍ ଆକସେସ୍' ପ୍ରଣୀତ ହୋଇ କାର୍ଯ୍ୟ କରୁଛି । ସେ ଦେଶର ପ୍ରଧାନମନ୍ତ୍ରୀଙ୍କୁ ଆସୁଥିବା ଚିଠି ପତ୍ର, ଦରଖାସ୍ତ, ଫାଇଲକୁ ଦେଖିବାକୁ ଏବଂ ତାହା ଉପରେ ଗ୍ରହଣ କରାଯାଇଥିବା ନିଷ୍ପତ୍ତିକୁ ଦେଖିବାର ଅଧିକାର, ସେ ଦେଶର ସାମ୍ବାଦିକମାନଙ୍କୁ ଦିଆଯାଇଛି । ୧୯୩୯ ମସିହାରେ ବ୍ରିଟେନର ଇଂରେଜ ସରକାର 'କମନ ଲ' ଫର୍ ପବ୍ଲିକ୍' ଗ୍ରହଣ କରିବା ପରେ ଜନସାଧାରଣ ସୂଚନା ଅଧିକାର ପାଇଛନ୍ତି । 'ଦି ପବ୍ଲିକ୍ ରେକର୍ଡ଼ସ ଲ' ୧୯୫୮ ମସିହାରେ ପ୍ରଣୀତ ହେବା ପରେ ୩୦ ବର୍ଷର ପୁରୁଣା ରେକର୍ଡ଼, ନଥିପତ୍ର ଦେଖିବାକୁ, ତା'ର ପ୍ରତିଲିପି ପାଇବାକୁ ନାଗରିକମାନଙ୍କୁ ଅଧିକାର ଦିଆଯାଇଛି ।

ଜାତିସଂଘରେ ଥିବା ୧୯୧ଟି ଦେଶ ସେମାନଙ୍କ ନାଗରିକମାନଙ୍କ ପାଇଁ ତଥ୍ୟ ଜାଣିବାର ଆଇନଗତ ସୁବିଧା ସୃଷ୍ଟି କରିବା ପାଇଁ ଏକ ନୈତିକ କର୍ତ୍ତବ୍ୟ ରହିଛି ବୋଲି ଜାତିସଂଘର 'କମନ ଲ' ମାନୁଆଲରେ ଉଲ୍ଲେଖ ରହିଛି । ଆମ ଦେଶର କର୍ଣ୍ଣାଟକ, ତାମିଲନାଡୁ, ଦିଲ୍ଲୀ, ମହାରାଷ୍ଟ୍ର, ରାଜସ୍ଥାନ ଆଦି କେତେକ ରାଜ୍ୟ ବିଧାନସଭାରେ ତଥ୍ୟ ଜାଣିବାର ଅଧିକାରକୁ ଆଇନଗତ ସ୍ୱୀକୃତି ଦେଇ ସାରିଛନ୍ତି । ପାର୍ଲାମେଣ୍ଟ ଏ ସଂପର୍କରେ ଏକ ଆଇନ ପ୍ରଣୟନ କରିଥିବାରୁ, ବର୍ତ୍ତମାନ ସେଗୁଡ଼ିକ ଅକାମୀ ହୋଇଯିବ ଏବଂ କେନ୍ଦ୍ର ଆଇନ ସର୍ବତ୍ର କାର୍ଯ୍ୟକାରୀ କରାଯିବ ।

ନିକଟରେ କେନ୍ଦ୍ର ସରକାର ଏବଂ ୟୁରୋପ ୟୁନିୟନ୍‌ର ଯୁଗ୍ମ ବ୍ୟବସ୍ଥାରେ ୟୁରୋପ ମହାଦେଶର ୭ଟି ଦେଶ ବୁଲିବାର ସୁଯୋଗ ମୁଁ ପାଇଥିଲି । ଦେଶର ୮ ଜଣ ବରିଷ୍ଠ ସାମ୍ବାଦିକମାନଙ୍କ ମଧ୍ୟରେ ମୁଁ ମଧ୍ୟ ଯାଇଥିଲି । ସେଠାରେ ପ୍ରାୟ ୫୦ ଦିନ କାଳ ରହିବା ସମୟରେ ଜଣେ ସାମ୍ବାଦିକ ଭାବରେ ସେଠାକାର ବିଭିନ୍ନ ବ୍ୟବସ୍ଥା ସଂପର୍କରେ ଅନୁଧ୍ୟାନ କରିବାର ସୁଯୋଗ ମିଳିଥିଲା । ଆମର ପ୍ରକଳ୍ପର ନାମ ରଖାଯାଇଥିଲା 'ୟୁରୋପରେ ଭାରତ ସମ୍ବାଦ' । ଆମ ଦେଶ ସଂପର୍କରେ ୟୁରୋପ ଦେଶମାନଙ୍କରେ କେତେ ସମ୍ବାଦ ପ୍ରକାଶ ପାଉଛି, କି ପ୍ରକାର ସମ୍ବାଦ ପ୍ରକାଶ ପାଉଛି, ସପକ୍ଷରେ ବା ବିପକ୍ଷରେ ଅଧିକ ସମ୍ବାଦ ପ୍ରକାଶ ପାଉଛି, ଏ ସମ୍ବନ୍ଧରେ ୟୁରୋପବାସୀଙ୍କ ପ୍ରତିକ୍ରିୟା କ'ଣ ? ଆଦି ଜାଣିବାକୁ ଓ ଏକ ରିପୋର୍ଟ ଦେବାକୁ କୁହାଯାଇଥିଲା । ୟୁରୋପ ୟୁନିୟନ ନିମନ୍ତ୍ରଣରେ ଯାଇଥିବାରୁ ସେଠାକାର ସରକାର, ପ୍ରଶାସନ, ସମ୍ବାଦପତ୍ର ଓ ସାମ୍ବାଦିକମାନଙ୍କର ସହଯୋଗ ମିଳିବାରେ ଅସୁବିଧା ହୋଇନଥିଲା । ସେ ମହାଦେଶରେ 'ତଥ୍ୟ ଜାଣିବାର ଅଧିକାର' ସଂପର୍କରେ ମୁଁ ସଂଗ୍ରହ କରିଥିବା ତଥ୍ୟ ଏଠାରେ ପ୍ରକାଶ

କରି ସରକାର, ପ୍ରଶାସକ, ସାମ୍ବାଦିକ ଓ ନାଗରିକମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ମୁଁ ଚେଷ୍ଟା କରିଛି ।

ୟୁରୋପ ହେଉଛି ଏକ ମହାଦେଶ । ସେଥିରେ ଛୋଟ ବଡ଼ ୩୫ଟି ଦେଶ ରହିଛି । ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଇଟାଲୀ, ବେଲଜିୟମ୍, ସ୍ୱିଡେନ ପରି ଶକ୍ତିଶାଳୀ ଦେଶ ଥିବାବେଳେ ଲକ୍ଷମବର୍ଗ, ନେଦରଲାଣ୍ଡ ପରି ଛୋଟ ଛୋଟ ଦେଶ ମଧ୍ୟ ଅଛନ୍ତି । ଏହି ଦେଶମାନେ ଅତୀତରେ ନିଜ ନିଜ ମଧ୍ୟରେ ଲଢ଼ି ଯଥେଷ୍ଟ ଶକ୍ତି ନଷ୍ଟ କରିଛନ୍ତି । ଏ ସବୁ ଇତିହାସରେ ଉଲ୍ଲେଖ ଅଛି । ଦେଶଗୁଡ଼ିକ ପରସ୍ପର ମଧ୍ୟରେ ଲଢୁଥିବାରୁ ବିକାଶର ପ୍ରତିବନ୍ଧକ ହେଉଛି ବୋଲି ଅନୁଭବ କରି ସେମାନେ 'ୟୁରୋପ ୟୁନିୟନ' ପ୍ରତିଷ୍ଠା କଲେ । ସମଗ୍ର ୟୁରୋପ ମହାଦେଶ ପାଇଁ ଗୋଟିଏ ପ୍ରକାର ଆଇନ ଓ ମୁଦ୍ରା ବ୍ୟବହାର ସହିତ ଗୋଟିଏ ପାସ୍‌ପୋର୍ଟର ସମଗ୍ର ମହାଦେଶ ଗମନାଗମନ କରିବାର ସୁବିଧା ବ୍ୟବସ୍ଥା କରାଯାଇଛି । ଏକ ହେବା ପାଇଁ ସମସ୍ତେ ଏକମତ ହୋଇଥିଲେ ସୁଦ୍ଧା ବର୍ତ୍ତମାନ ସେ ଦିଗରେ ବହୁତ କାମ ବାକି ଅଛି ଓ ବହୁ ପ୍ରତିବନ୍ଧକ ଅତିକ୍ରମ କରିବାର ଅଛି ।

ତେବେ ସର୍ବପ୍ରଥମେ ଯେଉଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା, ତାହା ହେଲା 'ତଥ୍ୟ ଜାଣିବାର ଅଧିକାର' । ଏହା ବହୁ ପୂର୍ବରୁ ସେଠାରେ ପ୍ରଚଳିତ । ସେଠାରେ କୌଣସି କଥା ଗୁପ୍ତ ଭାବରେ କରାଯାଏନା । ଅଳ୍ପ କେତୋଟି କଥା ଛାଡ଼ି ଦେଲେ ସମସ୍ତେ ସବୁ କଥା ଜାଣିପାରିବେ । ଆମ ଦେଶରେ ସୂଚନା ଅଧିକାର ଆଇନରେ ପରିଣତ ହେବାପରେ ଯେକୌଣସି ନାଗରିକ, ଯେକୌଣସି ବିଷୟରେ ଜାଣିବାକୁ ଚାହିଁଲେ, ସେ ଦରଖାସ୍ତ କରିବେ, ଆବଶ୍ୟକୀୟ ଟଙ୍କା ଜମା କରିବେ । କେତେ ଟଙ୍କା କେଉଁ ତଥ୍ୟ ପାଇଁ ଜମା କରିବାକୁ ହେବ ତାହା ପ୍ରଶାସକ ସ୍ଥିର କରିବ । ତଥ୍ୟ ଯୋଗାଇବାକୁ ପ୍ରଶାସନ ସମୟ ନେବ ।

ୟୁରୋପ ମହାଦେଶରେ ତଥ୍ୟ ମାଗିବାର ଆବଶ୍ୟକତା ପଡ଼େ ନାହିଁ । ସରକାର ସମସ୍ତ ତଥ୍ୟ ଜନସାଧାରଣଙ୍କୁ ମାଗଣାରେ ଯୋଗାଇ ଦିଅନ୍ତି । ପ୍ରତ୍ୟେକ ବିଭାଗରେ ଗୋଟିଏ ଲେଖାଁ 'ୱେବ୍‌ସାଇଟ୍' ରହିଛି । ସେଥିରେ ସରକାରର ସମସ୍ତ କାର୍ଯ୍ୟ, ନିଷ୍ପତ୍ତି, ଭବିଷ୍ୟତ ଯୋଜନା ସଂପର୍କରେ ଉଲ୍ଲେଖ କରନ୍ତି । ସେଗୁଡ଼ିକ ପଢ଼ିବା ପରେ ଯଦି ମନରେ କିଛି ସନ୍ଦେହ ଆସେ, ତେବେ ଇ-ମେଲ ଜରିଆରେ ପ୍ରଶ୍ନ ପଚାରିଲେ, ତାହାର ଉତ୍ତର ଚବିଶ ଘଣ୍ଟା ମଧ୍ୟରେ ମିଳିଯାଏ । ଯଦି ଆଲୋଚନା କରିବାକୁ କେହି ନାଗରିକ ଇଚ୍ଛା କରେ ଏବଂ ସେଥିପାଇଁ ସମୟ ଚାହେଁ, ତେବେ ତାଙ୍କୁ ସାତଦିନ ମଧ୍ୟରେ ଆଲୋଚନା କରିବାର ନିର୍ଦ୍ଦିଷ୍ଟ ସ୍ଥାନ, ତାରିଖ, ସମୟ ଜଣାଇ ଦିଆଯିବ । ବିଷୟବସ୍ତୁର ଗୁରୁତ୍ୱ ଅନୁସାରେ ପାଞ୍ଚ ମିନିଟ୍, ଦଶ ମିନିଟ ବା ଅଧଘଣ୍ଟା ସମୟ ଦିଆଯିବ । ନାଗରିକଙ୍କୁ କିନ୍ତୁ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚି, ନିର୍ଦ୍ଦିଷ୍ଟ ସମୟରେ ସ୍ଥାନ ଛାଡ଼ିବାକୁ ହେବ ।

ୟୁରୋପ ମହାଦେଶର ରାଜଧାନୀ ଏବେ ହେଉଛି ବ୍ରସେଲ୍‌ସ ସହର । ବ୍ରସେଲ୍ସ ସହର ମଧ୍ୟ ହେଉଛି ବେଲଜିୟମ ଦେଶର ରାଜଧାନୀ । ମହାଦେଶରେ ଥିବା ସମସ୍ତ ଦେଶର କିଛି ଦାୟିତ୍ୱବାନ କର୍ମକର୍ତ୍ତା ଦେଶ ପକ୍ଷରୁ ବ୍ରସେଲ୍‌ସରେ ରହୁଛନ୍ତି । ସେମାନଙ୍କଠାରୁ ମଧ୍ୟ ସମସ୍ତ ତଥ୍ୟ ମିଳିପାରିବ, ତେବେ ଖବର ସଂଗ୍ରହ କରିବାକୁ ସାମ୍ବାଦିକମାନଙ୍କୁ ଅଖଣ୍ଡ କ୍ଷମତା ଦିଆଯାଇଛି । ଶନିବାର ଓ ରବିବାର ତଥା ଛୁଟି ଦିନ ବ୍ୟତୀତ ପ୍ରତ୍ୟେକ ଦିନ ୟୁରୋପ କମିଶନର କନଫରେସନ୍‌ସ ହଲରେ ଦିନ ୧୨ଟାରୁ ଗୋଟାଏ ପର୍ଯ୍ୟନ୍ତ 'ଡେଲି ପ୍ରେସ ବ୍ରିଫିଙ୍ଗ' କରାଯାଏ । ଏହା ଏକ ବଡ଼ ଅଡିଟୋରିୟମ୍ । ଯେଉଁଥିରେ ପାଞ୍ଚ ଶହ ଲୋକ ବସିପାରିବେ । ବ୍ରସେଲ୍‌ସରେ ରହୁଥିବା ମୋଟ ସାମ୍ବାଦିକଙ୍କ ସଂଖ୍ୟା ହେଉଛି ୧୨୭ । ବିଭିନ୍ନ ଟି.ଭି. ଚ୍ୟାନେଲ୍‌ର ସାମ୍ବାଦିକ, କର୍ମଚାରୀଙ୍କ ସଂଖ୍ୟା ୬୩ । ବାହାର ଦେଶର ସାମ୍ବାଦିକଙ୍କୁ ମିଶାଇ ଏହି ସଂଖ୍ୟା ୨୫୦ରୁ କେବେ ଅଧିକ ହୁଏ ନାହିଁ । ଅବଶିଷ୍ଟ ସ୍ଥାନରେ ଜନସାଧାରଣ ବସି ପାରିବେ । ତେବେ ସେମାନେ କୌଣସି ପ୍ରଶ୍ନ ପଚାରି ପାରିବେ ନାହିଁ ।

ସାମ୍ବାଦିକମାନଙ୍କ ବସିବା ସିଟ୍ ପାଖରେ ମାଇକ୍ରୋଫୋନ ରହିଛି । ଯଦି ପ୍ରଶ୍ନ ପଚାରିବାକୁ ଅଛି, ତେବେ ମାଇକ୍ରୋଫୋନ ସୁଇଚ ଦବାଇଲେ ପେଣ୍ଡାଲରେ ଥିବା ସ୍ପିକର୍ ଡେସ୍କରେ ଲାଇଟ୍ ଜଳିବ । ସ୍ପିକର୍ ଡେସ୍କରେ ଥିବା ସୁଇଚ୍ ଅନ୍ କଲେ ସାମ୍ବାଦିକଙ୍କୁ ଅନୁମତି ମିଳିବ, ସେ ପ୍ରଶ୍ନ ପଚାରି ପାରିବେ । ପ୍ରଶ୍ନ ସଂକ୍ଷିପ୍ତ ଏବଂ ନିର୍ଦ୍ଦିଷ୍ଟ ହେବା ଦରକାର । ଯଦି ଆଲୋଚନା ପାଇଁ ଅଧିକ ସମୟ ଦରକାର, ତେବେ ତାଙ୍କୁ କୁହାଯିବ ଯେ ସେ ନିର୍ଦ୍ଦିଷ୍ଟ ବିଭାଗର 'ସ୍ପୋକ ପର୍ସନ'ଙ୍କ ସହ ସମୟ ଧାର୍ଯ୍ୟ କରିବାକୁ ।

ୟୁରୋପରେ ୧୧ଟି କଥିତ ଓ ଲିଖିତ ଭାଷା ଅଛି । ପ୍ରତ୍ୟେକ ସିଟ୍‌ରେ ଆପଣ କେଉଁ ଭାଷାରେ ଶୁଣିବାକୁ ବା ପ୍ରଶ୍ନୋତ୍ତର କରିବାକୁ ଚାହାନ୍ତି, ସେଥିପାଇଁ ନିର୍ଦ୍ଦିଷ୍ଟ ଭାଷାର ବୋତାମ ଚିପିଲେ ଆପଣ ସେହି ଭାଷାରେ ପ୍ରଶ୍ନ କରିପାରିବେ ଓ ସେଇ ଭାଷାରେ ଉତ୍ତର ପାଇପାରିବେ । ସେଥିପାଇଁ ୧୧ଟି କ୍ୟାବିନ୍ ଅଛି । ଯେଉଁଥିରେ ଅନୁବାଦକମାନେ ବସିଥାଆନ୍ତି, ସେମାନେ ଏତେ ଶୀଘ୍ର ଅନୁବାଦ କରନ୍ତି ଯେ ଜଣେ ଜାଣିପାରିବ ନାହିଁ ଏହା ଅନ୍ୟ ଭାଷାରୁ ଅନୁବାଦ ହେଉଛି । ଉପସ୍ଥିତ ବ୍ୟକ୍ତି ନିଜେ ଚାହୁଁଥିବା ଭାଷାରେ ଉତ୍ତର ଶୁଣିପାରିବେ ।

ଅଡିଟୋରିୟମ ଲବିରେ ବିଗତ ସାତ ଦିନର ସମସ୍ତ ବିଭାଗର ପ୍ରେସ୍ ନୋଟ୍ ରହିଥିବ । ସାମ୍ବାଦିକ କୌଣସି ପ୍ରେସ୍ ନୋଟ୍ ନେଇ ପାରିବେ । ଅଡିଟୋରିୟମରେ ସମସ୍ତ ପ୍ରଶ୍ନର ଉତ୍ତର 'ଚିଫ୍ ସ୍ପୋକମ୍ୟାନ' ଦେବେ । ସମସ୍ତ ସରକାରୀ ଦପ୍ତରକୁ କୋଡ଼ିଏଟି ବିଭାଗରେ ବିଭକ୍ତ କରାଯାଇଛି । ପ୍ରତ୍ୟେକ ବିଭାଗରେ ଜଣେ ଜଣେ 'ସ୍ପୋକମ୍ୟାନ' ନିଯୁକ୍ତି ପାଇଛନ୍ତି । ୨୦ ଜଣ ସ୍ପୋକମ୍ୟାନ ପ୍ରତିଦିନ ପ୍ରେସ୍ ବ୍ରିଫିଙ୍ଗ୍‌ରେ ଉପସ୍ଥିତ ରହି ଆବଶ୍ୟକ ହେଲେ ନିଜ ବିଭାଗର

ଉତ୍ତର ଦିଅନ୍ତି । 'ଚିଫ୍ ସ୍ପୋକମ୍ୟାନ' ବା ବିଭାଗୀୟ 'ସ୍ପୋକମ୍ୟାନ' ବ୍ୟତୀତ ଅନ୍ୟ କେହି ସାମ୍ବାଦିକଙ୍କୁ କିଛି କହିପାରିବେ ନାହିଁ । ଯଦି ବ୍ୟକ୍ତିଗତ ବନ୍ଧୁତା ଯୋଗୁଁ କେହି କିଛି କହନ୍ତି, ତେବେ ତାହା 'ଅଫ୍ ଦି ରେକର୍ଡ଼' ହେବ ଏବଂ ତାହା ବିଭାଗୀୟ ଉତ୍ତର ବୋଲି ଗ୍ରହଣ କରାଯିବ ନାହିଁ । ଅବଶ୍ୟ କମିଶନର ଉଚ୍ଚ ପଦସ୍ଥ ଅଫିସର ବା ବିଭାଗୀୟ ମୁଖ୍ୟ 'ଡାଇରେକ୍ଟର ଜେନେରାଲ ଅଫ୍ ସର୍ଭିସେସ୍' ଚାହିଁଲେ ସାମ୍ବାଦିକମାନଙ୍କୁ 'ଅନ୍ ଦି ରେକର୍ଡ଼' କହିପାରିବେ ।

ପ୍ରତ୍ୟେକ ଶନିବାର ଦିନ ସାପ୍ତାହିକ ପ୍ରେସ୍ ବ୍ରିଫିଙ୍ଗ୍ କରାଯିବ । ପୂର୍ବ ସପ୍ତାହରେ ଘଟିଥିବା କିଛି ଘଟଣା ବା ନିଷ୍ପତ୍ତି ସଂପର୍କରେ ସାମ୍ବାଦିକମାନେ ପ୍ରଶ୍ନ କରିପାରିବେ । ମାସର ପ୍ରଥମ ରବିବାର ଦିନ ଗତ ମାସର ତଥ୍ୟ ପାଇଁ ମାସିକିଆ ବ୍ରିଫିଙ୍ଗ କରାଯିବ । କେଉଁ ବିଭାଗର କିଏ ସ୍ପୋକମ୍ୟାନ ବା ତାଙ୍କର ସହଯୋଗୀ, ତାହା ନୋଟିସ୍ ବୋର୍ଡ଼ରେ ଲେଖାଯାଇଥିବ । ସେମାନଙ୍କ ଅନୁପସ୍ଥିତିରେ କିଏ ସ୍ପୋକମ୍ୟାନ ହେବେ, ତାହା ଘୋଷଣା କରାଯାଇଥିବ । କୌଣସି ନାଗରିକ, ଅଫିସର ବା କର୍ମକର୍ତ୍ତା, ସାମ୍ବାଦିକ, ଅଫିସ୍ ମଧ୍ୟକୁ ବିନା ଅନୁମତିରେ ପ୍ରବେଶ କରିପାରିବେ ନାହିଁ । ସମସ୍ତ କର୍ମଚାରୀଙ୍କ ନିକଟରେ 'ଇଲେକ୍‌ଟ୍ରୋନିକ୍ ପରିଚୟପତ୍ର' ଫଟୋ ସହିତ ଅଛି । କେବଳ ନିର୍ଦ୍ଦିଷ୍ଟ ସ୍ଥାନରେ ଥିବା ତାଲା ପାଖରେ ପରିଚୟପତ୍ର ଦେଖାଇ ଦେଲେ ତାହା ଆପେ ଖୋଲିଯିବ । ଯଦି କାହାରିକୁ ଭେଟିବାର ଅଛି ଓ ଅନୁମତି ମିଳିଛି, ତେବେ ନିର୍ଦ୍ଦିଷ୍ଟ ସମୟରେ ଜଣେ କର୍ମଚାରୀ କବାଟ ସମ୍ମୁଖରେ ଉପସ୍ଥିତ ଥିବେ । ନିଜର ପରିଚୟପତ୍ର ଦେଖାଇଲେ, ସେ ସାଙ୍ଗରେ ନେଇଯିବେ ।

ସାମ୍ବାଦିକମାନେ ବ୍ରସେଲ୍‌ସରେ ରହି ସାମ୍ବାଦିକତା କରିବାକୁ ଚାହୁଁଛନ୍ତି ବୋଲି ଜଣାଇଲେ, ସେମାନଙ୍କୁ ଏକ ଫର୍ମ ପୂରଣ କରି ଦେବାକୁ ହେବ ଏବଂ ତାଙ୍କୁ ଚବିଶ ଘଣ୍ଟା ମଧ୍ୟରେ ପରିଚୟପତ୍ର ମିଳିଯିବ । ତାଙ୍କୁ ସରକାରଙ୍କ ସମସ୍ତ ନିଷ୍ପତ୍ତି, କାର୍ଯ୍ୟ, ନିମନ୍ତ୍ରଣ ଇ-ମେଲ୍ ଠିକଣାରେ ଯୋଗାଇ ଦିଆଯିବ । ସେ ଚାହୁଁଥିବା ପ୍ରଶ୍ନର ଉତ୍ତର ମଧ ଘରେ ବସି ଇ-ମେଲ୍ ଜରିଆରେ ପାଇପାରିବେ । ଯଦି କାହାରିକୁ ଭେଟିବାର ଅଛି, ତେବେ ତାଙ୍କର ଇ-ମେଲ୍ ଠିକଣାରେ, ଭେଟିବାର କାରଣ ବିଷୟ ଜଣାଇଲେ ଚବିଶ ଘଣ୍ଟା ମଧ୍ୟରେ ଉତ୍ତର ପାଇପାରିବେ ।

ଏହାବ୍ୟତୀତ ସରକାରଙ୍କ ସମସ୍ତ ବିଭାଗ ପକ୍ଷରୁ ଦୈନିକ ପ୍ରକାଶ କରାଯାଏ 'ଡେଲି ନୋଟ୍ ବୁକ୍' । ଏହାଛଡ଼ା ପ୍ରକାଶ କରାଯାଏ 'ଦି ଉଇକ୍', 'ନିଉଜ୍ ରିପୋର୍ଟ', 'ନିଉଜ୍ ଆଲର୍ଟ', 'ବ୍ୟାକ୍ ଗ୍ରାଉଣ୍ଡ୍ ନୋଟ୍' । ଏଥିରେ ସମସ୍ତ ତଥ୍ୟ ଥାଏ, ଯାହାଦ୍ୱାରା ଅନ୍ୟ କୌଣସି ତଥ୍ୟ ମାଗିବାକୁ କାହାରି ଆବଶ୍ୟକତା ପଡ଼େ ନାହିଁ । ଏସବୁ ଜନସାଧାରଣଙ୍କୁ ମାଗଣାରେ ଯୋଗାଇ ଦିଆଯାଏ । ଯଦି କେହି ନିଜ ଘରକୁ ମଗାଇବାକୁ ଚାହେଁ, ତେବେ ତାଙ୍କୁ ନିର୍ଦ୍ଦିଷ୍ଟ ଟଙ୍କା ଜମା କରିବାକୁ ପଡ଼ିବ ।

ମାଗଣାରେ ସମ୍ବାଦପତ୍ର ମିଳେ । ବିମାନବନ୍ଦର, ରେଳ ଷ୍ଟେସନ୍, ବସ୍‌ଷ୍ଟାଣ୍ଡ, ହୋଟେଲ, ଅନୁଷ୍ଠାନ, ଅଫିସ୍ ଆଗରେ 'ନିଉଜ ଷ୍ଟାଣ୍ଡ' ଅଛି । ସେଠାରୁ ପ୍ରକାଶିତ ଖବରକାଗଜ ମାଗଣାରେ ମିଳିପାରିବ । ଘରକୁ ମଗାଇଲେ ଟଙ୍କା ଦେବାକୁ ପଡ଼ିବ । ବ୍ରସେଲ୍‌ସରେ ଏହି ସବୁ ସ୍ଥାନରେ 'ଗାର୍ଡ଼ିଆନ୍', ଫାଇନାନ୍‌ସିଆଲ ଟାଇମ୍‌ସ ବା 'ୱାଲ ଷ୍ଟ୍ରିଟ୍ ଜର୍ଣ୍ଣାଲ ଅଫ୍ ୟୁରୋପ' ମାଗଣାରେ ମିଳିବ । ଦୋକାନରୁ କିଣିଲେ ବା ଘରକୁ ମଗାଇଲେ ଗାର୍ଡ଼ିଆନର ମୂଲ୍ୟ ସାଢ଼େ ଚାରି ୟୁରୋ ଅର୍ଥାତ୍ ୨୭୦ ଟଙ୍କା ଖଣ୍ଡକର ମୂଲ୍ୟ । ପ୍ରତି ଖବରକାଗଜକୁ ସରକାର ପ୍ରତିମାସରେ କିଛି ଟଙ୍କା ଦିଅନ୍ତି । କାରଣ ଖବରକାଗଜ ସରକାରଙ୍କ କାମ, ନିଷ୍ପତ୍ତି ଲୋକଙ୍କ ପାଖରେ ପହଞ୍ଚାଉଛି । ସେଥିରେ ସରକାରଙ୍କର କୌଣସି ବିଜ୍ଞାପନ ଛପାଯାଏ ନାହିଁ । କାରଣ ବିଜ୍ଞାପନଗୁଡ଼ିକ ୱେବସାଇଟ୍‌ରେ ଥାଏ ।

ଏହାବ୍ୟତୀତ ସରକାରଙ୍କ କାମ ଜାଣିବାକୁ ବହୁତଗୁଡ଼ିଏ ୱେବ୍‌ସାଇଟ୍ ରହିଛି । ସେଗୁଡ଼ିକ ଜନସାଧାରଣଙ୍କ ପାଇଁ କିଛି ମାଗଣା ଓ କିଛି ଦେୟ ରହିଥିବା ବେଳେ ସାମ୍ବାଦିକଙ୍କ ପାଇଁ ସଂପୂର୍ଣ୍ଣ ମାଗଣା ।

ଯଦି ଭାରତ ସରକାର ସବୁ ମୁକ୍ତ ବ୍ୟବସ୍ଥା ମଧ୍ୟରେ କାମ କରିବାକୁ ଚାହିଁବେ, ତେବେ ତଥ୍ୟ ଜାଣିବାକୁ କାହାରି ଦରକାର ପଡ଼ିବ ନାହିଁ । କୌଣସି କଥା ଗୁପ୍ତ ରଖାନଯାଉ । ସବୁ କିଛି ସଂପୂର୍ଣ୍ଣ ସ୍ୱଚ୍ଛ ଭାବରେ କରାଗଲେ, ନାଲିଫିତାର କାରସାଦି ବା ଦୁର୍ନୀତି ମୂଳପୋଛ ହୋଇପାରିବ ।

ଜି.ଏମ୍.-୪, ବାସନ୍ତୀ ନଗର
ରାଉରକେଲା-୭୬୯୦୧୨



# ଓଡ଼ିଶାରେ ତଥ୍ୟ ଜାଣିବା ଅଧିକାର ଆଇନ ଓ ନିୟମାବଳୀର କାର୍ଯ୍ୟକାରିତା

କାଶୀନାଥ ବାରିକ

ସର୍ବସାଧାରଣଙ୍କର ତଥ୍ୟ ଜାଣିବାର ଅଧିକାର ଉପରେ ଓଡ଼ିଶା ତଥା ଭାରତର ବିଭିନ୍ନ ସାମ୍ବାଦିକ ସଂଘମାନେ ବହୁବାର ଆଲୋଚନାଚକ୍ର କରି ସେମାନଙ୍କର ଦାବିକୁ ଉପସ୍ଥାପନ କରିଆସିଥିଲେ । କେନ୍ଦ୍ର ସରକାର ଏହି ଦାବିକୁ ଯଥାମାନ୍ୟତା ଦେଇ ସେସବୁକୁ ଗ୍ରହଣ କରିବାପାଇଁ ଉପସ୍ଥାପନ କରିବା ପରେ ୨୦୦୫ ମସିହାରେ ସେସବୁ ଆଇନରେ ପରିଣତ ହୋଇଥିଲା । ସେ ଆଇନକୁ 'Right to Information Act, 2005' ବୋଲି କୁହାଯାଇଥିଲା । ଏହାଫଳରେ ଉପବିଧି ୧ ଓ ୨ ଅଧିନିୟମ ୫ ସହିତ ଅଧିନିୟମ ୧୨, ୧୩, ୧୫, ୧୬, ୨୪, ୨୭ ଓ ୨୮ ପ୍ରଭୃତି ଶୀଘ୍ର କାର୍ଯ୍ୟକାରୀ ହୋଇପାରିଲା । ଅନ୍ୟସବୁ ପରବର୍ତ୍ତୀ ପର୍ଯ୍ୟାୟରେ କାର୍ଯ୍ୟକାରୀ ହୋଇଥିଲା । ସେହି ଅନୁସାରେ ଭାରତର ବିଭିନ୍ନ ରାଜ୍ୟଗୁଡ଼ିକ ତଥ୍ୟଜାଣିବାର ଅଧିକାରକୁ ସମସ୍ତଙ୍କୁ ଜଣାଇବା ପାଇଁ ପଦକ୍ଷେପ ନେଇଥିଲେ । ସେହି ଦିଗରେ ଆବଶ୍ୟକୀୟ ନିୟମାବଳୀମାନ ପ୍ରସ୍ତୁତକରି ସେସବୁକୁ କାର୍ଯ୍ୟକାରୀ କରାଇବା ପାଇଁ ଉଦ୍ୟମ କରିଥିଲେ । କେନ୍ଦ୍ର ସରକାରଙ୍କ ଦ୍ୱାରା ଅନୁମୋଦିତ ଏହି ଆଇନକୁ ଓଡ଼ିଶା ରାଜ୍ୟ ସରକାର ଗତ ତା.୧୨.୧୦.୨୦୦୫ରିଖରେ କାର୍ଯ୍ୟକ୍ଷମ କରିଥିଲେ । ରାଜ୍ୟ ସରକାରଙ୍କର ଉଦ୍ଦେଶ୍ୟ ରହିଲା - ପ୍ରତି ନାଗରିକ ଯେପରି ସେମାନଙ୍କ ପାଇଁ ବିଭିନ୍ନ କ୍ଷେତ୍ରରେ ହେଉଥିବା କାର୍ଯ୍ୟକୁ ଅଧିକ ସ୍ୱଚ୍ଛଭାବରେ ଜାଣିବା । ଅର୍ଥାତ୍, କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ବିଭିନ୍ନ ଯୋଜନା ଓ ପ୍ରକଳ୍ପମାନ ରାଜ୍ୟରେ କିଭଳି କାର୍ଯ୍ୟ କରୁଛି, ସେସବୁକୁ ସମସ୍ତେ ଜାଣିବା ସହିତ ସେସବୁର ସଂଗଠନ ଓ ଉନ୍ନତିମାନ କିପରି ଅଧିକ ବଳିଷ୍ଠ ହୋଇପାରିବ - ସେ ଦିଗରେ ଅଧିକ ପରାମର୍ଶ ନେବାର ଉଦ୍ଦେଶ୍ୟ ରହିଲା ।

ଏହି କାର୍ଯ୍ୟକୁ ସବୁରାଜ୍ୟ ସ୍ୱାଗତ କରିଥିଲେ । ଭାରତର ସମ୍ବିଧାନ ୧୯୫୦ ମସିହାରୁ କାର୍ଯ୍ୟକାରୀ ହେବାପରେ ଏ ଦେଶରେ କିପରି ପ୍ରଗତି ହୋଇପାଇଛି, ସେ ବିଷୟରେ ପ୍ରତି ନାଗରିକ ଜାଣିବା ପାଇଁ ସୁଯୋଗ ପାଇପାରିଲେ ଅପର ପକ୍ଷରେ ଦୁର୍ନୀତିକୁ କିପରି ମୂଳୋତ୍ପାଟନ କରାଯାଇପାରିବ, ସେହି ଆଇନ ମଧ୍ୟ ଅଧିକ ସହାୟକ ହୋଇପାରିଲା । ଅଧିକନ୍ତୁ, ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପ୍ରତିରାଜ୍ୟ ସଂହତି ସ୍ଥାପନ କରିବା ଦିଗରେ ସକ୍ଷମ ହୋଇପାରିଲେ । ବିଭିନ୍ନ ରାଜ୍ୟରେ ଉନ୍ନୟନମୂଳକ କାମଗୁଡ଼ିକ କିପରି ଶୃଙ୍ଖଳିତ ଭାବରେ ହୋଇପାରୁଛି, ସେ ଦିଗରେ ସମସ୍ତେ ଜାଣିପାରିଲେ । ସାର୍ବଭୌମତାର ସୁରକ୍ଷା ହୋଇପାରିଲା । ତେବେ, ପ୍ରତି ନାଗରିକ ସେମାନଙ୍କର ଆଗ୍ରହକୁ ଫଳପ୍ରଦ କରାଇବା ପାଇଁ ସରକାରଙ୍କ ଉପରେ ନିର୍ଭର କରୁଥିବା ହେତୁ ଆବେଦନ କରିବା ଦିଗରେ ସଯତ୍ନ ହେବାର ଆବଶ୍ୟକତା ରହିଲା । ସେ ଯାହା ହେଉନା କାହିଁକି ସାଧାରଣତନ୍ତ୍ର ଦିବସ ପାଳନର ଛପନବର୍ଷ ପରେ ଏଭଳି ଏକ ଐତିହାସିକ ପଦକ୍ଷେପକୁ ସମସ୍ତେ ପ୍ରଶଂସା କରିବା ସହିତ ସ୍ୱାଗତ କରିଛନ୍ତି ।

ବର୍ତ୍ତମାନ ଦେଶର ପ୍ରତିନାଗରିକ ଦେଶର ଯେଉଁ ତଥ୍ୟଗୁଡ଼ିକ ପାଇପାରୁଛନ୍ତି, ସେଗୁଡ଼ିକ ହେଲା - ରେକର୍ଡ଼, ଡକ୍ୟୁମେଣ୍ଟ, ମେସେଜ୍ ଇମେଲ୍, ଓପିନିଅନ, ପ୍ରେସ୍ ରିଲିଜ୍, ସାର୍କୁଲରସ୍, ଅର୍ଡରସ୍, ଲଗ୍‌ବୁକ୍, ରିପୋର୍ଟସ୍, ପେପରସ୍, ସାମ୍ପୁଲସ୍, ମୋଡେଲସ୍ ଡାଟା ମେଟିରିଆଲସ୍, ଇତ୍ୟାଦି । ଏହାବ୍ୟତୀତ ଇଲେକ୍‌ଟ୍ରୋନିକ୍ସ ମେଡିଆ ମାଧ୍ୟମରେ ଫର୍ମ ମଧ୍ୟ ପାଇପାରୁଛନ୍ତି । ଯେକୌଣସି ଘରୋଇ ସଂଘ ସରକାରୀ କାମରେ ସମ୍ପୃକ୍ତ ଥିଲେ, ସେହି ସଂଘର ତଥ୍ୟାବଳୀ ମଧ୍ୟ ଯୋଗାଇ ଦିଆଯାଉଅଛି । ଭାରତର ସମ୍ବିଧାନ ଅନୁମୋଦିତ ବା ଅନୁବନ୍ଧିତ ଯେକୌଣସି ଘରୋଇ ଅନୁଷ୍ଠାନରୁ ମଧ୍ୟ ତଥ୍ୟଜାଣିବାର ଅଧିକାର ଆଇନକୁ ପରିସରଭୁକ୍ତ କରାଯାଇଅଛି । ପାର୍ଲାମେଣ୍ଟ, ବିଧାନସଭା ଅଥବା ବିଭିନ୍ନ ସିଣ୍ଡିକେଟ୍ ବୈଠକରେ ଗୃହୀତ ତଥ୍ୟାବଳୀମାନ ଦିଆଯାଇପାରୁଛି । ସରକାରୀ ଅର୍ଥ ଅନୁଦାନ ଥିଲେ, ସେସବୁକୁ ମଧ ଦେବା ଦିଗରେ କଟକଣା ରହୁନାହିଁ । ରେକର୍ଡ଼ କହିଲେ - ଯେକୌଣସି ନଥିପତ୍ର, ପାଣ୍ଡୁଲିପି, ଫାଇଲ୍ ବୋଲି ବୁଝିବାକୁ ପଡ଼ିବ । ଏପରିକି ମାଇକ୍ରୋ ଫିଲସ୍ ସହିତ ଜଡ଼ିତ ଯେକୌଣସି ତଥ୍ୟ ମଧ୍ୟ ପାଇବାରେ ସୁଯୋଗ ରହିଅଛି । ଯେକୌଣସି ତଥ୍ୟକୁ ସିଧାସଳଖ ବା ଭିନ୍ନ ଧାରାରେ ପ୍ରଯୋଜନା ହୋଇଥିଲେ, ସେସବୁର ବାସ୍ତବ ବା ଛାୟା ରୂପକୁ ଯୋଗାଇ ଦିଆଯାଉଅଛି । ସାଧାରଣ ନାଗରିକ ସହିତ ସମ୍ପର୍କ ରହୁଥିବା ଇନ୍ସପେକ୍ସନ, କାଗଜପତ୍ର, ରେକର୍ଡ଼, ନୋଟ୍ସ ଆଦିର ସାର୍ଟିଫାଏଡ୍ କପି ଯୋଗାଇବା ସହିତ ଭିଡ଼ିଓ ଟେପ୍, ଡିସ୍କ, ଫ୍ଲପିଜ୍

ପ୍ରଭୃତି ଯେ କୌଣସି ଇଲେକ୍‌ଟ୍ରୋନିକ୍ସ ମେଡ଼ିଆର ତଥ୍ୟ ମଧ୍ୟ ଦିଆଯାଉଅଛି ।

ଏଥିସକାଶେ ପ୍ରତି ରାଜ୍ୟରେ ଜଣେ ଲେଖାଏଁ ମୁଖ୍ୟ ଭାବରେ ତଥ୍ୟ ଦେବାର କମିଶନରଙ୍କୁ ନିଯୁକ୍ତ କରାଯାଇଛି । କମିଶନରଙ୍କୁ ସହଯୋଗ କରିବାକୁ ଅନ୍ୟଜଣେ ନିଯୁକ୍ତ ହୋଇଛନ୍ତି । ଏହାବ୍ୟତୀତ କେତେକ କର୍ମଚାରୀ ନିଯୁକ୍ତ ହୋଇ ତଥ୍ୟ ଯୋଗାଉଅଛନ୍ତି । ସେମାନେ ଆଇନକାନୁନ୍, ନିର୍ଦ୍ଦେଶାନାମା, ମେନୁଆଲ୍, ରେକର୍ଡ଼କୁ କାର୍ଯ୍ୟକାରୀ କରାଇବା ଦିଗରେ ପଦକ୍ଷେପ ନେଉଅଛନ୍ତି । ସେମାନେ ନୋଟିସ୍ ବୋର୍ଡ଼, ଖବରକାଗଜ, ଡାକବାଜି ଯନ୍ତ୍ର, ରେଡ଼ିଓ ଓ ଟେଲିଭିଜନ ଦ୍ୱାରା ଘୋଷଣା, ଇଣ୍ଟରନେଟ୍ ସନ୍ଦେଶ ଦେଇ ସାଧାରଣ ଲୋକମାନଙ୍କୁ ସଜାଗ କରାଉଅଛନ୍ତି । ସାଧାରଣ ଲୋକମାନଙ୍କର ମାଧମକୁ ସେମାନେ ବ୍ୟବହାର କରୁଥିଲେ ସୁଦ୍ଧା ଜାମ୍ମୁ ଓ କାଶ୍ମୀରକୁ ଛାଡ଼ି ଦେଲେ ଦେଶର ସବୁରାଜ୍ୟରୁ ସବୁ ଖବର ଜଣାଇବା ପାଇଁ ତତ୍ପରତା ପ୍ରକାଶ କରୁଅଛନ୍ତି ।

ତଥ୍ୟଗୁଡ଼ିକୁ ପାଇବା ପାଇଁ ଇଂରାଜୀ, ହିନ୍ଦୀ ଅଥବା ରାଜ୍ୟ ସରକାରଙ୍କ ଦ୍ୱାରା ଗୃହୀତ ଯେକୌଣସି ଭାଷାରେ ଏକ ଆବେଦନଫର୍ମରେ ଲେଖିବା ପରେ ଧାର୍ଯ୍ୟ ତଥ୍ୟ ମିଳିପାରୁଛି । ସଂକ୍ଷିପ୍ତ ଭାବରେ ଆବେଦନକାରୀଙ୍କୁ ସେମାନେ ବୁଝାଉଅଛନ୍ତି । ଆବେଦନ ଫର୍ମ ଦାଖଲ ପରେ ପାଞ୍ଚଦିନ ମଧ୍ୟରେ ବିଭାଗୀୟ କର୍ମଚାରୀ ପାଖକୁ ଉକ୍ତ କାଗଜ ପଠାଇ ଦିଆଯାଉଅଛି । ଆବେଦନର ମୂଲ୍ୟ ଦେଇଥିଲେ ତିରିଶ ଦିନ ମଧ୍ୟରେ ତଥ୍ୟମାନ ଯୋଗାଇ ଦିଆଯାଉଅଛି । ଆବଶ୍ୟକସ୍ଥଳେ ଜୀବନ ପ୍ରତି ବିପଦ ଓ ସ୍ୱାଧୀନତାକୁ ରକ୍ଷା କରିବା ପାଇଁ ଅଠଚାଳିଶ ଘଣ୍ଟା ମଧ୍ୟରେ ଆବେଦନକାରୀଙ୍କୁ ତଥ୍ୟମାନ ଦିଆଯାଉଅଛି । ଅଯୌକ୍ତିକ ଆବେଦନ ପତ୍ରକୁ ଫେରସ୍ତ ଦେବା ଓ ଚୂଡ଼ାନ୍ତ ନିଷ୍ପତ୍ତିର ଖବରକୁ ଏକ ସ୍ୱତନ୍ତ୍ର ପତ୍ରରେ ଜଣାଇ ଦିଆଯାଉଛି । ଡାକଖର୍ଚ୍ଚକୁ ବାଦ୍‌ଦେଇ ପତ୍ରାଳାପ କରାଯିବାରେ ସରକାର ସବୁ ଖର୍ଚ୍ଚ ବହନ କରୁଛନ୍ତି । ଅଧିକ ତଥ୍ୟ ପାଇବା ପାଇଁ ଆଶାୟୀବ୍ୟକ୍ତିକୁ ସମୟସୀମା ସଂଗ୍ରହ ପ୍ରସେସ୍ ସକାଶେ ଅପେକ୍ଷା କରିବା ସହିତ ଅଳ୍ପ ଅଧିକ ଟଙ୍କା ଦେବାକୁ ପଡୁଛି । ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଆବେଦନକାରୀ ଯଦି ସରକାରଙ୍କ ଦ୍ୱାରା ଚିହ୍ନିତ ହୋଇଥାଏ, ତେବେ ତାଙ୍କୁ ଖର୍ଚ୍ଚ ଦେବାକୁ ପଡ଼ିବ ନାହିଁ ।

ସମ୍ବିଧାନ ବିରୋଧ ଆଚରଣ କରୁଥିବା ଅଥବା ଭିନ୍ନ ମନୋଭାବର ବ୍ୟକ୍ତିକୁ ତଥ୍ୟ ଯୋଗାଇବାରେ କଟକଣା ରହିଅଛି । ଦେଶର ସୁରକ୍ଷା, ରାଜ୍ୟର ବୈଜ୍ଞାନିକ ଓ ଅର୍ଥନୈତିକ ସ୍ୱାର୍ଥକୁ ଧୂଳିସାତ୍ କରୁଥିବା ତଥ୍ୟାବଳୀ ଦେବା ବିଚାରାଧୀନ ଥିବା ବିଚାରକୁ ବାତିଲ କରାଯାଇଅଛି । ବାଣିଜ୍ୟ ବେପାର ଦିଗରେ ବୃହତ୍ତର ସ୍ୱାର୍ଥକୁ ଚାହିଁ କେତେକ ତଥ୍ୟ ଯୋଗାଇବା ଦିଗରେ ନିଷିଦ୍ଧ ରହିଛି । ଅନୁରୂପ ଭାବରେ ବିଚାରାଧୀନଥିବା ମନ୍ତ୍ରୀମାନଙ୍କ ନିକଟରେ ତଥ୍ୟାବଳି, ସାଧାରଣ ନାଗରିକଙ୍କର କଳହ ସୃଷ୍ଟିକାରୀ ଖବରମାନ ଯୋଗାଇବା ଉକ୍ତ ଆଇନରେ ନାହିଁ । ମନ୍ତ୍ରୀମାନଙ୍କର ତଥ୍ୟାବଳୀ ଜାଣିବା ପାଇଁ ହେଲେ ଚୂଡ଼ାନ୍ତ ନିଷ୍ପତ୍ତିକୁ ଅପେକ୍ଷା କରିବାକୁ ପଡୁଛି । କୋଡ଼ିଏ ବର୍ଷ ଧରି ଘଟିଥିବା ଘଟଣାକୁ ଜଣକୁ ପାଇବାକୁ ହେଲେ କେନ୍ଦ୍ର ସରକାରଙ୍କର ନିଷ୍ପତ୍ତିକୁ ମାନିବାକୁ ପଡୁଛି । କେନ୍ଦ୍ର ଓ ରାଜ୍ୟର ବିନାସ ଦିଗରେ ଯଦି କେହି ବିବଦମାନ ତଥ୍ୟ ନେବାପାଇଁ ଆଗ୍ରହ ପ୍ରକାଶ କରେ, ତେବେ ସେ ଦିଗରେ ତଥ୍ୟ ଯୋଗାଇବା ନିଷିଦ୍ଧ ରହିଛି ।

କେନ୍ଦ୍ର ସରକାର ଯେଉଁଭଳି ରାଷ୍ଟ୍ରପତିଙ୍କର ଅନୁମୋଦନ କ୍ରମେ ଏକ କେନ୍ଦ୍ରୀୟ ତଥ୍ୟ ଜାଣିବାର ଅଧିକାର କମିଶନ ବା ଆୟୋଗ ଗଠନ କରିଛନ୍ତି, ଓଡ଼ିଶା ସରକାର ସେଥିପାଇଁ ତଥ୍ୟ ଜାଣିବାର ଅଧିକାର ଆଇନକୁ କାର୍ଯ୍ୟକାରୀ କରାଇବା ପାଇଁ ଜଣେ ବରିଷ୍ଠ ପ୍ରଶାସକଙ୍କୁ ରାଜ୍ୟ ମୁଖ୍ୟ ସୂଚନା କମିଶନର ଭାବେ ରାଜ୍ୟପାଳଙ୍କ ଦ୍ୱାରା ନିଯୁକ୍ତ କରିଅଛନ୍ତି । ଜନସମ୍ପର୍କ, ଆଇନ ବିଶେଷଜ୍ଞ, ବିଜ୍ଞାନ ଓ କାରିଗରୀ, ସମାଜସେବା, ପରିଚାଳନା, ସାମ୍ବାଦିକତା, ମାସମେଡିଆ, ପ୍ରଶାସନ ଓ ଗଭର୍ଣ୍ଣାସ୍ ଦିଗକୁ ବିଚାରକୁ ନେଇ ଦଶ ଜଣଙ୍କୁ ସେ ମନୋନୀତ କରିପାରିବେ । ଏଥିସକାଶେ ମନୋନୟନ ପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଚେୟାରପର୍ସନ, ବିରୋଧୀଦଳର ନେତା ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀଙ୍କର ମନୋନୀତ ଜଣେ କ୍ୟାବିନେଟ୍ ମନ୍ତ୍ରୀ ଡା. ଦାମୋଦର ରାଉତଙ୍କୁ ନେଇ ସମିତି ଗଠିତ ହୋଇଥିଲା । ସେମାନେ ସବୁଦିଗକୁ ବିଚାର କରି ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ, ଆଇ.ଏ.ଏସ୍.ଙ୍କୁ ତଥ୍ୟ ଜାଣିବା ଅଧିକାର ଆୟୋଗ ମୁଖ୍ୟ ଭାବେ ଓ ପ୍ରାଧ୍ୟାପକ ଶ୍ରୀ ରାଧାମୋହନଙ୍କୁ ରାଜ୍ୟ କମିଶନର ଭାବେ ନିଯୁକ୍ତି ଦେବା ପାଇଁ ରାଜ୍ୟପାଳଙ୍କୁ ସୁପାରିଶ କରିଥିଲେ । ସର୍ବସମ୍ମତି ପରେ ଉକ୍ତ କମିଟି ମତ ଦେଇଥିଲେ । ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଉକ୍ତ କମିଟିର ମତ ଉପରେ ଏବେ ନିଯୁକ୍ତି ଦେଇଅଛନ୍ତି । ସେମାନେ ପାର୍ଲାମେଣ୍ଟ, ବିଧାନସଭା, କେନ୍ଦ୍ରଶାସିତ ଅଞ୍ଚଳର ପ୍ରତିନିଧି ଅଥବା ଲାଭଜନକ ବ୍ୟବସାୟରେ ଲିପ୍ତ ନଥିବା, ରାଜନୀତି ସହିତ ସମ୍ପୃକ୍ତ ନଥିବା ବ୍ୟକ୍ତି ହୋଇଥିବାହେତୁ, ମହାମାନ୍ୟ ରାଜ୍ୟପାଳ ଶ୍ରୀ ଠାକୁର ସେମାନଙ୍କୁ ନିଯୁକ୍ତି ଦେଇଛନ୍ତି । ସେମାନଙ୍କର ମୁଖ୍ୟ କାର୍ଯ୍ୟାଳୟଟି ଏବେ ଲୋକ ସଂପର୍କ ଭବନର ପାଖରେ ଥିବା ଅତିଥିଭବନରେ କାର୍ଯ୍ୟ କରୁଛି । ସେମାନେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଏହି ଆଇନକୁ କାର୍ଯ୍ୟକାରୀ କରାଇବା ପାଇଁ ପତ୍ରାଳାପ କରିବା ପରେ ଆବଶ୍ୟକୀୟ ପଦକ୍ଷେପ ମାନ ନେଉଛନ୍ତି ।

ଏହି ଆୟୋଗର ବ୍ୟକ୍ତିମାନେ ପାଞ୍ଚବର୍ଷ ରହିବାର ସୂଚିତ ହୋଇଅଛି । ଚାକିରିରେ ଥାଆନ୍ତୁ କି ନଥାଆନ୍ତୁ, ଅବସର ପରେ ମଧ୍ୟ ପାଞ୍ଚବର୍ଷ ସେମାନେ ରହି କାର୍ଯ୍ୟ ସମ୍ପାଦନ କରିପାରିବେ ।

ଉପରୋକ୍ତ ମୁଖ୍ୟ ଓ ଅନ୍ୟାନ୍ୟ କମିଶନରମାନଙ୍କୁ ବହିଷ୍କାର କରିବା ରାଜ୍ୟପାଳଙ୍କର କର୍ତ୍ତୃତ୍ୱାଧୀନ । ମାନ୍ୟବର ରାଜ୍ୟପାଳ

ଅଭିଯୋଗ, ଦୁର୍ନୀତିମୂଳକ କାମରେ ଲିପ୍ତ, ଅଯୋଗ୍ୟତା ଆଦିର ଅଭିଯୋଗ ପାଇଁ ଅନୁସନ୍ଧାନ କରିବା ପରେ ଯେଉଁ ଲିଖିତ ରିପୋର୍ଟ କେନ୍ଦ୍ରର ମୁଖ୍ୟ ବିଚାରପତିଙ୍କୁ ଦେବେ, ସେସବୁ ବିଚାର ହୋଇ ଦଣ୍ଡିତ ହେବା ପରେ କମିଶନରମାନଙ୍କୁ ପଦବୀରୁ ବହିଷ୍କାର କରାଯାଇପାରିବ ।

ଓଡ଼ିଶା ସୂଚନା କମିଶନ ଅଧିକ କାମ କରି ଆଗୁଆ ହୋଇଥିବାରୁ ମାଗାସେସେ ପୁରସ୍କାର ବିଜୟିନୀ କୁମାରୀ ଅରୁଣା ରାୟ ନିକଟରେ ଓଡ଼ିଶା ଗସ୍ତରେ ଆସି ଭୂୟସୀ ପ୍ରଶଂସା କରିଅଛନ୍ତି । କୁମାରୀ ରାୟ ଜନହିତକର କାମରେ ରହିଥିବା ହେତୁ ଉନ୍ନୟନର ୱେବ୍‌ସାଇଟ୍ ଦେଖି ଅଧିକ ଆଶାପୋଷଣ କରିଛନ୍ତି ।

ଇତିମଧ୍ୟରେ କେନ୍ଦ୍ର ସରକାର ବିଦେଶୀ କମ୍ପାନୀର ଭାରତ ତଥା ରାଜ୍ୟ ପ୍ରତି ଯେଉଁ ପତ୍ରାଳାପ ହୋଇଅଛି ସେ ସବୁକୁ ଦେଶର ସ୍ୱାର୍ଥ ଦୃଷ୍ଟିରୁ ପରିବର୍ତ୍ତନ କରିବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ଓଡ଼ିଶାରେ ତଥ୍ୟ ଜାଣିବା ଅଧିକାର ଆଇନର ମୁଖ୍ୟ ଶ୍ରୀ ପାଢ଼ୀ, ତାଙ୍କର ଏକ ସାକ୍ଷାତକାରରେ ରାଜ୍ୟବାସୀଙ୍କର ମଙ୍ଗଳକାରକ ପଦକ୍ଷେପ ଉପରେ କହିଛନ୍ତି । ସେହିପରି ଆବେଦନପତ୍ରକୁ ବିଚାରକରି ତଥ୍ୟ ଗ୍ରହିତାର ଅର୍ଥ ଓ ଅନ୍ୟାନ୍ୟ ସୁବିଧା ଅସୁବିଧାକୁ ପରିବର୍ତ୍ତନ କରାଯିବାର ପଦକ୍ଷେପକୁ ରାଜ୍ୟର ତଥ୍ୟ ଜାଣିବା ଅଧିକାରର କମିଶନର ଅଧ୍ୟାପକ ଶ୍ରୀ ରାଧାମୋହନ ଇ.ଟି.ଭି.ର ଏକ ସାକ୍ଷାତକାରରେ ପ୍ରକାଶ କରିଅଛନ୍ତି ।

ରାଜ୍ୟପାଳଙ୍କର ଆଦେଶ ଅନୁସାରେ ତଥ୍ୟ ଜାଣିବାର ଅଧିକାରର କମିଶନର ତଥା ସୂଚନା ଓ ଲୋକ ସମ୍ପର୍କ ବିଭାଗର ସଚିବ ଶ୍ରୀ ଦିଗମ୍ବର ମହାନ୍ତି କେନ୍ଦ୍ରର ଆଇନ ବହି ଓ ରାଜ୍ୟର ଉକ୍ତ ଆଇନର ନିୟମାବଳୀକୁ ଛପାଇ ରାଜ୍ୟବାସୀଙ୍କୁ ଜଣାଇବା ପାଇଁ ପଦକ୍ଷେପ ନେଇଅଛନ୍ତି । ସୂଚନା ଓ ଲୋକ ସଂପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଓ ଉପ-ନିର୍ଦ୍ଦେଶକ ଶ୍ରୀ ତାରାକାନ୍ତ ମହାନ୍ତି ଏବଂ ଶ୍ରୀ ରାମକୃଷ୍ଣ ମାଝୀ ଏହି ଦିଗରେ ପଦକ୍ଷେପ ନେଇ ମାଗଣାରେ ସେସବୁ ପୁସ୍ତକ ବଣ୍ଟନ କରୁଅଛନ୍ତି ।

ଗବେଷକ ଓ ସାମ୍ବାଦିକ
ଭୁବନେଶ୍ୱର

---

# କଳିଙ୍ଗ ଷ୍ଟାଡିୟମ୍ ପରିସରରେ ନବନିର୍ମିତ ଆନ୍ତର୍ଜାତିକ ମାନର ସନ୍ତରଣାଗାର

ରାଜ୍ୟର ଅଗଣିତ କ୍ରୀଡ଼ାବିତ୍ ଓ କ୍ରୀଡ଼ାପ୍ରେମୀମାନଙ୍କର ଆଶା ଓ ଆକାଂକ୍ଷାକୁ ପୂରଣ କରି ଆସନ୍ତା ମାର୍ଚ୍ଚ ୪ ତାରିଖ ଦିନ କଳିଙ୍ଗ ଷ୍ଟାଡିୟମ୍ ପରିସରରେ ଉଦ୍‌ଘାଟିତ ହେବାକୁ ଯାଉଛି ନବନିର୍ମିତ ଆନ୍ତର୍ଜାତିକ ମାନର ସନ୍ତରଣାଗାର । ୨ କୋଟି ୭୨ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଅତ୍ୟାଧୁନିକ ଜିମ୍ ବ୍ୟବସ୍ଥା ସହିତ ନିର୍ମାଣ କରାଯାଉଥିବା ୫୦ x ୨୫ ମିଟର ସାଇଜ୍‌ର ଏହି ସନ୍ତରଣାଗାର ସଂପୂର୍ଣ୍ଣ ହେବା ଦିଗରେ ଦ୍ରୁତ ଅଗ୍ରସର ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ବର୍ତ୍ତମାନ ସରକାର ରାଜ୍ୟକୁ ଦେଶର ଅଗ୍ରଣୀ କ୍ରୀଡ଼ା ରାଜ୍ୟ ଭାବେ ପରିଗଣିତ କରିବା ପାଇଁ କ୍ରୀଡ଼ା ଭିତ୍ତିଭୂମି ଉନ୍ନୟନ, କ୍ରୀଡ଼ାବିତ୍‌ମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ, ଜାତୀୟ ତଥା ଆନ୍ତର୍ଜାତୀୟ କ୍ରୀଡ଼ାରେ ଅଂଶଗ୍ରହଣ କରିବା ନିମନ୍ତେ ପ୍ରୋତ୍ସାହନ, ନୂତନ କ୍ରୀଡ଼ା ପ୍ରତିଭାମାନଙ୍କୁ ଚିହ୍ନଟ ଓ ଯୁବକ ଯୁବତୀମାନଙ୍କୁ କ୍ରୀଡ଼ା ପ୍ରତି ଅଧିକରୁ ଅଧିକ ଆକୃଷ୍ଟ କରିବା ନିମନ୍ତେ କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ପରାମର୍ଶ ଓ ଦିଗ୍‌ଦର୍ଶନରେ ବିଭାଗ ପକ୍ଷରୁ ବହୁବିଧ ପଦ୍‌କ୍ଷେପ ଗ୍ରହଣ କରାଯାଉଛି । ମନ୍ତ୍ରୀ ଶ୍ରୀ ନାୟକ ରାଜ୍ୟର ବିଭିନ୍ନ ନିର୍ମାଣାଧୀନ କ୍ରୀଡ଼ା ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟର ଅଗ୍ରଗତି ସଂପର୍କରେ ନିୟମିତ ସମୀକ୍ଷା କରିବା ସଂଗେସଂଗେ ସମୟସୀମା ମଧ୍ୟରେ ମଂଜୁର ଅର୍ଥର ସଂପୂର୍ଣ୍ଣ ବିନିଯୋଗ ନିମନ୍ତେ ପରାମର୍ଶ ଦେଇଛନ୍ତି । କଳିଙ୍ଗ ଷ୍ଟାଡିୟମ୍ ପରିସରରେ ଆନ୍ତର୍ଜାତିକ ମାନର ସନ୍ତରଣାଗାର ନିର୍ମାଣ କାର୍ଯ୍ୟକୁ ନିୟମିତ ପରିଦର୍ଶନ କରିବା ସହିତ ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ ମଧ୍ୟ କରାଇଛନ୍ତି ।

# ଓଡ଼ିଶା ସୂଚନା ଅଧିକାର ନିୟମାବଳୀ, 2005

ଏସ୍.ଆର୍.ଓ. ସଂ - 477/2005 - ସୂଚନା ଅଧିକାର ଅଧିନିୟମ, 2005 (2005ର ସଂ22)ର ଧାରା 27 ଦ୍ୱାରା ଅର୍ପିତ କ୍ଷମତାର ପ୍ରୟୋଗକ୍ରମେ, ରାଜ୍ୟ ସରକାର ଏତଦ୍ୱାରା ନିମ୍ନଲିଖିତ ନିୟମାବଳୀ ପ୍ରଣୟନ କରିଛନ୍ତି :-

**1. ସଂକ୍ଷିପ୍ତ ନାମ ଓ ପ୍ରାରମ୍ଭ :-** (1) ଏହି ନିୟମାବଳୀ, ଓଡ଼ିଶା ସୂଚନା ଅଧିକାର ନିୟମାବଳୀ, 2005 ଭାବରେ ଅଭିହିତ ହେବ ।

(2) ଓଡ଼ିଶା ଗେଜେଟ୍‌ରେ ପ୍ରକାଶନ ତାରିଖଠାରୁ ଏହା ବଳବତ୍ତର ହେବ ।

**2. ସଂଜ୍ଞା :-** (1) ବିଷୟ ବା ପ୍ରସଙ୍ଗରେ ବିରୁଦ୍ଧାତ୍ମକ କିଛି ନଥିଲେ ଏହି ନିୟମାବଳୀରେ -

(କ) ''ଅଧିନିୟମ'' ଅର୍ଥ ସୂଚନା ଅଧିକାର ଅଧିନିୟମ, 2005 (2005ର ସଂ 22);

(ଖ) ''ବି.ପି.ଏଲ୍. କାର୍ଡ଼'' ଅର୍ଥ ଦାରିଦ୍ର୍ୟ ସୀମାରେଖା ତଳେ ଥିବା କୌଣସି ନାଗରିକଙ୍କୁ ଦିଆଯାଇଥିବା ଏକ କାର୍ଡ଼;

(ଗ) ''ଫିସ୍'' ଅର୍ଥ ସୂଚନା ଯୋଗାଇ ଦେବା ପାଇଁ ଖର୍ଚ୍ଚ ଛଡ଼ା ଧାରା 6ର ଉପଧାରା (1) ଏବଂ ଧାରା 7ର ଉପାଧାରା (1) ଏବଂ (5)ର ବ୍ୟବସ୍ଥାଗୁଡ଼ିକ ଅନୁଯାୟୀ କୌଣସି ସୂଚନା ପାଇବା ପାଇଁ ଦରଖାସ୍ତକାରୀଙ୍କ ଦ୍ୱାରା ପ୍ରଦେୟ ପରିମାଣ;

(ଘ) ''ଫର୍ମ'' ଅର୍ଥ ଏହି ନିୟମାବଳୀରେ ସଂଲଗ୍ନ ଏକ ଫର୍ମ;

(ଙ) ''ପରିଚୟ'' ଅର୍ଥ ଜଣେ ବ୍ୟକ୍ତିଙ୍କ ନାଗରିକତ୍ୱ ଦର୍ଶାଇବା ପାଇଁ ଏକ ନିର୍ବାଚନ ଫଟୋ ପରିଚୟପତ୍ର, ଏକ ପାସ୍‌ପୋର୍ଟ ବା ଅନ୍ୟ କୌଣସି ଦସ୍ତାବିଜ୍ ପରି ଏକ ସାକ୍ଷ୍ୟ ପ୍ରମାଣ ଯାହା ଜଣେ ବ୍ୟକ୍ତିଙ୍କର ନାଗରିକତ୍ୱ ସମ୍ବନ୍ଧରେ କର୍ତ୍ତୃପକ୍ଷଙ୍କର ହୃଦ୍‌ବୋଧ କରାଇ ପାରିବ;

(ଚ) ''ନୋଡାଲ୍ ଅଧିକାରୀ'' ଅର୍ଥ ସୂଚନା ଓ ଲୋକ ସଂପର୍କ ବିଭାଗର କମିଶନର ତଥା ଶାସନ ସଚିବ;

(ଛ) ''ଲୋକସୂଚନା ଅଧିକାରୀ'' ଅର୍ଥ ଅଧିନିୟମର ଧାରା 5ର ଉପଧାରା (1) ଅନୁଯାୟୀ ପଦନାମିତ ରାଜ୍ୟ ଲୋକ ସୂଚନା ଅଧିକାରୀ ଏବଂ ଉକ୍ତ ଧାରାର ଉପଧାରା (2) ଅନୁଯାୟୀ ସେଭାବେ ପଦନାମିତ ଜଣେ ସହାୟକ ଲୋକ ସୂଚନା ଅଧିକାରୀ ମଧ୍ୟ ଏହାର ଅନ୍ତର୍ଭୁକ୍ତ;

(ଜ) ''ଅନୁସୂଚୀ'' ଅର୍ଥ ଏହି ନିୟମାବଳୀର ସଂଲଗ୍ନ ଏକ ଅନୁସୂଚୀ; ଏବଂ

(ଝ) ''ରାଜ୍ୟ ସରକାର'' ଅର୍ଥ ଓଡ଼ିଶା ସରକାର ।

(2) ଏହି ନିୟମାବଳୀରେ ବ୍ୟବହୃତ କିନ୍ତୁ ସଂଜ୍ଞା କରାଯାଇନଥିବା ଶବ୍ଦ ଓ ଅଭିବ୍ୟକ୍ତିଗୁଡ଼ିକର ଅର୍ଥ, ଅଧିନିୟମରେ ଯାହା ଅଛି ତାହା ହେବ ।

**3. ଲୋକ ସୂଚନା ଅଧିକାରୀମାନଙ୍କ ନିଯୁକ୍ତି ଓ ଦାୟିତ୍ୱ :-**

(1) ଏକ ସରକାରୀ କର୍ତ୍ତୃପକ୍ଷ ଯଦି ରାଜ୍ୟ ସରକାରଙ୍କ ଏକ ବିଭାଗ ହୋଇଥାଏ ତେବେ ତାହା ଉଚିତ ମନେ କରିବା ମତେ ଅନୁଶାସନ ସଚିବ ପାହ୍ୟାରୁ କମ୍ ହୋଇନଥିବା ସେପରି ସଂଖ୍ୟକ ଅଧିକାରୀଙ୍କୁ ଲୋକ ସୂଚନା ଅଧିକାରୀ ରୂପେ ପଦନାମିତ କରିବେ ।

(2) ବିଭାଗୀୟ ମୁଖ୍ୟ ଓ ଜିଲ୍ଲା ତଥା ସବ୍‌ଡିଭିଜନ ସ୍ତରର କାର୍ଯ୍ୟାଳୟଗୁଡ଼ିକ ସମେତ ସରକାରୀ ବିଭାଗର ପ୍ରତ୍ୟେକ ଅଧସ୍ଥନ କାର୍ଯ୍ୟାଳୟରେ ସେପରି କାର୍ଯ୍ୟାଳୟର ମୁଖ୍ୟ ଉଚିତ ମନେ କରିବା ମତେ ସେପରି ସଂଖ୍ୟକ ଅଧିକାରୀଙ୍କୁ ଲୋକ ସୂଚନା ଅଧିକାରୀ ଓ ସହାୟକ ଲୋକ ସୂଚନା ଅଧିକାରୀ ରୂପେ ପଦନାମିତ କରିବେ ।

(3) ଉକ୍ତ ନିୟମ 3ର ଉପନିୟମ (1) ଓ (2)ରେ ଉଲ୍ଲିଖିତ ସରକାରୀ କର୍ତ୍ତୃପକ୍ଷ ଭିନ୍ନ ଅନ୍ୟ ପ୍ରତ୍ୟେକ ସରକାରୀ କର୍ତ୍ତୃପକ୍ଷ ସେମାନଙ୍କ ଅଧୀନସ୍ଥ ସମସ୍ତ ପ୍ରଶାସନିକ ୟୁନିଟ୍ ଓ କାର୍ଯ୍ୟାଳୟଗୁଡ଼ିକରେ ଏକ ବା ଏକାଧିକ ଲୋକ ସୂଚନା ଅଧିକାରୀମାନଙ୍କୁ ପଦନାମିତ କରିବେ :

ପରନ୍ତୁ ଲୋକ ସୂଚନା ଅଧିକାରୀ ରୂପେ ସେ ଭାବେ ପଦନାମିତ କଲାବେଳେ ସେପରି ପ୍ରତ୍ୟେକ ସରକାରୀ କର୍ତ୍ତୃପକ୍ଷ ସୁନିଶ୍ଚିତ ହେବେ ଯେ ଅପିଲ୍ କର୍ତ୍ତୃପକ୍ଷ ଭାବେ ବିନିର୍ଦ୍ଦିଷ୍ଟ ହେବା ସକାଶେ ଲୋକ ସୂଚନା ଅଧିକାରୀଙ୍କ ପାହ୍ୟାରୁ ଉଚ୍ଚ ପାହ୍ୟାର ଜଣେ ଅଧିକାରୀ ଅଛନ୍ତି ।

(4) ଲୋକ ସୂଚନା ଅଧିକାରୀଙ୍କର ନିୟନ୍ତ୍ରଣ ବହିର୍ଭୂତ କୌଣସି କାରଣ ହେତୁ ସୂଚନା ପ୍ରଦାନରେ ବିଳମ୍ବ ହେଲେ ସେ ତାହାର କାରଣମାନ ତଥା ଯଥାର୍ଥତା ଅଭିଲିଖିତ କରିବେ ଏବଂ ସେପରି ବିଳମ୍ବ ବିଷୟରେ କାର୍ଯ୍ୟାଳୟ ମୁଖ୍ୟଙ୍କୁ ଜଣାଇବେ ।

**4. ସୂଚନା ପାଇବାକୁ ପ୍ରକ୍ରିୟା :-** (1) ଜଣେ ନାଗରିକ ଯଦି କୌଣସି ସୂଚନା ପାଇବାକୁ ଚାହୁଁଥିବେ ତେବେ ସେ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହେବା ମତେ ଆବଶ୍ୟକ ଫିସ୍ ସମୁଚିତ ହିସାବ ଶୀର୍ଷରେ ଟ୍ରେଜେରି ଚାଲାଣ କରି ବା ନଗଦ ପ୍ରଦାନ କରି ଲୋକ ସୂଚନା ଅଧିକାରୀଙ୍କୁ ଫର୍ମ 'କ'ରେ ଦରଖାସ୍ତ କରିପାରିବେ :

ପରନ୍ତୁ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବ୍ୟକ୍ତିମାନଙ୍କ ନିମନ୍ତେ ପ୍ରସ୍ତୁତ ସର୍ବଶେଷ ତାଲିକାରେ ଯେଉଁ ବ୍ୟକ୍ତିଙ୍କ ନାମ ଥିବ ସେପରି ଜଣେ ବ୍ୟକ୍ତିଙ୍କ କ୍ଷେତ୍ରରେ ଦରଖାସ୍ତ ଫିସ୍ ପ୍ରଦାନ କରିବାକୁ ପଡ଼ିବ ନାହିଁ କିନ୍ତୁ ସେଥିପାଇଁ ତାଙ୍କୁ ବି.ପି.ଏଲ୍. କାର୍ଡ଼ ଦାଖଲ କରିବାକୁ ପଡ଼ିବ :

ପରନ୍ତୁ ଇଲେକ୍‌ଟ୍ରୋନିକ୍‌ସ ଗଣମାଧମ ଜରିଆରେ ସୂଚନା ଚାହୁଁଥିବା ଜଣେ ନାଗରିକଙ୍କୁ ଏହି ସାକ୍ଷ୍ୟ ପ୍ରମାଣ ଦେବାକୁ ପଡ଼ିବ ଯେ ସେ ବିହିତ ଦରଖାସ୍ତ ଫିସ୍ ଦାଖଲ କରିଛନ୍ତି ।

(2) ଲୋକ ସୂଚନା ଅଧିକାରୀ ବା ତାଙ୍କ ଦ୍ୱାରା ପ୍ରାଧିକୃତ ଅନ୍ୟ କୌଣସି ଅଧିକାରୀ, ଦରଖାସ୍ତର ପ୍ରାପ୍ତି ସ୍ୱୀକାର କରିବେ ଏବଂ ଦରଖାସ୍ତକାରୀଙ୍କର ପରିଚୟ ସଂପର୍କରେ ତାଙ୍କର ହୃଦବୋଧ ହେବା ପରେ ସୂଚନା ଯୋଗାଇ ଦେବା ସକାଶେ ଦରଖାସ୍ତକାରୀ, ଖର୍ଚ୍ଚ ବାବଦକୁ ଅନୁସୂଚୀରେ ଉଲ୍ଲିଖିତ ହେବା ମତେ କେତେ ଟଙ୍କା ଦେବାକୁ ପଡ଼ିବ, ତାହା ଯଥାସମ୍ଭବ ଶୀଘ୍ର ଫର୍ମ 'ଖ'ରେ ଜଣାଇବେ ।

(3) ସୂଚନା ପ୍ରଦାନ ପାଇଁ ନିର୍ଦ୍ଧାରିତ ମୂଲ୍ୟ ପ୍ରଦାନ ସଂପର୍କରେ ଅବଗତ ହେବାର ପନ୍ଦର ଦିନ ମଧ୍ୟରେ, ଦରଖାସ୍ତକାରୀ ଉକ୍ତ ପରିମାଣ ଦାଖଲ କରିବେ ନଚେତ୍ ଦରଖାସ୍ତଟି ନାକଚ ହୋଇଯିବ ।

**5. ନାକଚ ସମ୍ବନ୍ଧରେ ସୂଚନା :-** (1) ଧାରା 7ର ଉପଧାରା (1) ଅନୁଯାୟୀ ଏକ ଦରଖାସ୍ତ ଯଦି ନାକଚ ହୁଏ, ତେବେ ଲୋକ ସୂଚନା ଅଧିକାରୀ ଫର୍ମ 'ଗ'ରେ ସେପରି ନାକଚର କାରଣ ଦରଖାସ୍ତକାରୀଙ୍କୁ ଜଣାଇଦେବେ ।

(2) ଯେଉଁ ସୂଚନା ପାଇଁ ଦରଖାସ୍ତ କରାଯାଇଥିବ ତାହା ଯଦି ଇଲେକ୍‌ଟ୍ରୋନିକ୍ ମାଧ୍ୟମରେ ଉପଲବ୍ଧ ହୋଇପାରୁଥିବ ତେବେ ଲୋକ ସୂଚନା ଅଧିକାରୀ ସମୁଚିତ ୱେବ୍‌ସାଇଟ୍ ଦର୍ଶାଇ ଦରଖାସ୍ତକାରୀଙ୍କୁ ଫର୍ମ 'ଗ'ରେ ଜଣାଇଦେବେ ଯେ ସେ ତାହା ୱେବ୍‌ସାଇଟ୍‌ରୁ ସଂଗ୍ରହ କରନ୍ତୁ ।

**6. ସୁପାରିଶ କମିଟିର ବୈଠକ :-** ଧାରା 15ର ଉପଧାରା (3) ଅନୁଯାୟୀ ରାଜ୍ୟ ମୁଖ୍ୟ ସୂଚନା ଆୟୁକ୍ତ ଓ ରାଜ୍ୟ ସୂଚନା ଆୟୁକ୍ତଙ୍କ ନିଯୁକ୍ତି ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କ ସହିତ ପରାମର୍ଶକ୍ରମେ ନୋଡାଲ ଅଧିକାରୀ କମିଟିର ସୁପାରିଶ ପାଇଁ କମିଟିର ବୈଠକ ଡାକିବେ ।

**7. ଅପିଲ୍ ସ୍ମାରକ :-** (1) ଧାରା 19ର ଉପଧାରା (1) ଅନୁଯାୟୀ ଏକ ଅପିଲ୍, ସେପରି ଅପିଲ୍ ଶୁଣିବା ପାଇଁ ସରକାରୀ କର୍ତ୍ତୃପକ୍ଷଙ୍କ ଦ୍ୱାରା ପଦନାମିତ ଅଧିକାରୀଙ୍କ ସମକ୍ଷରେ ଫର୍ମ 'ଘ'ରେ ଦାଖଲ କରାଯିବ ।

(2) ଅପିଲ୍ ସ୍ମାରକ ସହିତ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହେବା ମତେ ସେପରି ଫିସ୍ କୋର୍ଟଫିସ୍ ଷ୍ଟାମ୍ପ ଆକାରରେ ଦିଆଯିବ ।

(3) ଧାରା 19ର ଉପଧାରା (1) ଅନୁଯାୟୀ ଏକ ନିଷ୍ପତ୍ତିରେ କ୍ଷୁବ୍ଧ ଜଣେ ବ୍ୟକ୍ତି ତାହାର ଉପଧାରା (3) ଅନୁଯାୟୀ, ରାଜ୍ୟ ସୂଚନା ଆୟୋଗଙ୍କ ସମକ୍ଷରେ, ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହେବା ମତେ ସେପରି ଫିସ୍ କୋର୍ଟ ଫିସ୍ ଷ୍ଟାମ୍ପ ଆକାରରେ ପ୍ରଦାନ କରି ଫର୍ମ 'ଙ'ରେ ଦ୍ୱିତୀୟ ଅପିଲ୍ ଆଗତ କରିପାରିବେ ।

(4) ଉପନିୟମ (1) ଓ (3) ଅନୁଯାୟୀ ଆଗତ ଅପିଲ୍ ସହିତ ଯଦି ଆବଶ୍ୟକ ଫିସ୍ ଦିଆଯାଇନଥାଏ, ତେବେ ସଂପୃକ୍ତ ଅପିଲ୍ କର୍ତ୍ତୃପକ୍ଷ ତାହା ନାକଚ କରି ଦେବେ, କିନ୍ତୁ ଜଣେ ବି.ପି.ଏଲ୍. କାର୍ଡ଼ଧାରୀ ଦରଖାସ୍ତକାରୀଙ୍କୁ କୌଣସି ଫିସ୍ ଦେବାକୁ ପଡ଼ିବ ନାହିଁ ।

(5) ଅପିଲ୍ କର୍ତ୍ତୃପକ୍ଷଙ୍କ ପ୍ରତ୍ୟେକ ଆଦେଶ ସଂପୃକ୍ତ ଦରଖାସ୍ତକାରୀଙ୍କୁ ଏବଂ ଯଦି ଲୋକ ସୂଚନା ଅଧିକାରୀଙ୍କ ଆଦେଶ ବିରୁଦ୍ଧରେ ଅପିଲ୍ କରାଯାଇଥାଏ, ତେବେ ଲୋକ ସୂଚନା ଅଧିକାରୀଙ୍କୁ ଏବଂ ଯଦି ତାହା ଦ୍ୱିତୀୟ ଅପିଲ୍ ହୋଇଥାଏ, ତେବେ ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଯିବ ।

**8. ରାଜ୍ୟ ସରକାରଙ୍କ ଦ୍ୱାରା ନିର୍ଦ୍ଦେଶାବଳୀ :-** ଅଧିନିୟମ ଏବଂ ନିୟମାବଳୀର ବ୍ୟବସ୍ଥାଗୁଡ଼ିକର ସୂଚାରୁ କାର୍ଯ୍ୟାନ୍ୱୟନ ପାଇଁ ଅଧିନିୟମ ଓ ନିୟମାବଳୀର ବ୍ୟବସ୍ଥାଗୁଡ଼ିକ ସହିତ ଅସଂଗତ ହେଉନଥିବା ନିର୍ଦ୍ଦେଶାବଳୀ ନିର୍ଗମନ କରିବା କ୍ଷମତା ରାଜ୍ୟ ସରକାରଙ୍କ ରହିବ ।

**9. ଶାସ୍ତି ବିଧାନ :-** ସଂପୃକ୍ତ ଲୋକ ସୂଚନା ଅଧିକାରୀଙ୍କ ଉପରେ ଧାରା 20 ଅନୁଯାୟୀ ଯଦି ଶାସ୍ତିବିଧାନ କରାଯାଏ ତେବେ ଉକ୍ତ ଅଧିକାରୀ ତିରିଶ ଦିନ ମଧ୍ୟରେ ଉକ୍ତ ଶାସ୍ତି ପରିମାଣକୁ ଟ୍ରେଜେରି ଚାଲାଣ ମାଧ୍ୟମରେ ରାଜ୍ୟ ବଜେଟର ଉପଯୁକ୍ତ ପ୍ରାପ୍ତି ଶୀର୍ଷରେ ଦାଖଲ କରିପାରିବେ ନଚେତ୍ ସଂପୃକ୍ତ ଅଧିକାରୀଙ୍କ ଦରମାରୁ ଉକ୍ତ ପରିମାଣ ଆଦାୟ କରାଯିବ ।

**10. କ୍ଷତିର ହିସାବ :-** ଦ୍ରବ୍ୟର ନମୁନା ଆକାରରେ କୌଣସି ସୂଚନା ଦେବା ବେଳେ ଯଦି ସରକାରୀ ସଂପତ୍ତିର କୌଣସି କ୍ଷତି ହୁଏ ତେବେ ସୂଚନା ପ୍ରଦାନ କରିବା ସକାଶେ ଖର୍ଚ୍ଚ ନିର୍ଦ୍ଧାରଣ କଲାବେଳେ ସେପରି ସଂପତ୍ତିର କ୍ଷତି ପରିମାଣ ମଧ୍ୟ ନିର୍ଦ୍ଧାରଣ କରାଯାଇ ତହିଁରେ ଯୋଗ କରାଯିବ ।

**11. ରେଜିଷ୍ଟର ରଖିବା :-** (1) ଲୋକ ସୂଚନା ଅଧିକାରୀ ତାଙ୍କୁ ମିଳିଥିବା ଦରଖାସ୍ତ ଓ ସେ ଯୋଗାଇ ଦେଇଥିବା ସୂଚନାଗୁଡ଼ିକର ବିସ୍ତୃତ ବିବରଣୀ ଲିପିବଦ୍ଧ କରିବା ପାଇଁ ସେ ଫର୍ମ 'ଚ'ରେ ଏକ ରେଜିଷ୍ଟର ରଖିବେ ଏବଂ ସୂଚନା ଯୋଗାଇ ଦେବା ପରେ ସେ କାର୍ଯ୍ୟାଳୟ ମୁଖ୍ୟଙ୍କୁ ସେ ବିଷୟ ଅବଗତ କରାଇବେ ଏବଂ ସୂଚନା ଯୋଗାଇ ଦେବା ସକାଶେ ଲୋକ ସୂଚନା ଅଧିକାରୀ ଯେପରି ସହାୟତା ମାଗିବେ ତାହା ଯୋଗାଇ ଦେବା କାର୍ଯ୍ୟାଳୟ ମୁଖ୍ୟଙ୍କର କର୍ତ୍ତବ୍ୟ ଅଟେ ।

(2) ଲୋକ ସୂଚନା ଅଧିକାରୀ ସୂଚନା ଯୋଗାଇ ଦେବା ବାବଦରେ ଗ୍ରହଣ କରିଥିବା ଟଙ୍କାର ସବିସ୍ତାର ବିବରଣୀ ଲିପିବଦ୍ଧ କରିବା ପାଇଁ ଫର୍ମ 'ଛ'ରେ ଏକ ନଗଦ ହିସାବଖାତା ରଖିବେ ଏବଂ ସଂପୃକ୍ତ କାର୍ଯ୍ୟାଳୟ ମୁଖ୍ୟ ସ୍ଥିର କରିବା ମତେ ସେପରି ହିସାବ ଶୀର୍ଷରେ ବା ସେପରି ଅଧିକାରୀଙ୍କ ନାମରେ କୌଣସି ଅନୁସୂଚିତ ବ୍ୟାଙ୍କରେ ଉକ୍ତ ଅର୍ଥ ଜମା ରଖିବେ ।

**12. ଖର୍ଚ୍ଚ ଦାଖଲ :-** ରାଜ୍ୟ ସୂଚନା ଆୟୋଗଙ୍କ ସମକ୍ଷରେ ସାକ୍ଷୀ ହାଜର କରିବା ବା ଦସ୍ତାବିଜ ଉପସ୍ଥାପନ କରିବା ନିମନ୍ତେ ଯାହା ଖର୍ଚ୍ଚ ହେବ ସେହି ଖର୍ଚ୍ଚ ଯେଉଁ ପକ୍ଷଙ୍କ ନିବେଦନ କ୍ରମେ ସାକ୍ଷୀମାନଙ୍କୁ ହାଜର କରାଯିବ ବା ଦସ୍ତାବିଜ ଉପସ୍ଥାପନ କରାଯିବ ସେହି ପକ୍ଷଙ୍କ ଦ୍ୱାରା ଆୟୋଗଙ୍କ ସମକ୍ଷରେ ଦାଖଲ କରାଯିବ ।

**13. ଶାସ୍ତି ପରିମାଣ ବା କ୍ଷତିର ଅସୁଲ :-** ଅଧିନିୟମ ଅନୁଯାୟୀ, ପ୍ରଦେୟ କୌଣସି ଶାସ୍ତି ପରିମାଣ ବା କ୍ଷତି ପରିମାଣ ବା ଅନ୍ୟ କୌଣସି ଧନରାଶି, ତାହାର ଆଦାୟ ପାଇଁ ଆଦେଶ ପ୍ରାପ୍ତିର ତିରିଶ ଦିନ ମଧ୍ୟରେ ଯଦି ପ୍ରଦାନ କରାନଯାଏ ବା ଅସୁଲ କରାଯାଇନପାରେ, ତେବେ ବକେୟା ଭୂରାଜସ୍ୱ ଯେପରି ଭାବେ ଆଦାୟ ହୁଏ ସେପରି ଭାବେ ତାହା ଉକ୍ତ ବ୍ୟକ୍ତିଙ୍କଠାରୁ ଆଦାୟ ହେବ ।

(ସଂ-27163-ଆଇ.ପି.ଆର୍.)

ରାଜ୍ୟପାଳଙ୍କ ଆଦେଶକ୍ରମେ

ସ୍ୱା/-

(ଦିଗମ୍ବର ମହାନ୍ତି)
କମିଶନର ତଥା ଶାସନ ସଚିବ

## ଫର୍ମ - କ
### ନିୟମ 4(1) ଦ୍ରଷ୍ଟବ୍ୟ
### ଅଧିନିୟମର ଧାରା 6(1) ଅନୁଯାୟୀ ସୂଚନା ପାଇଁ ଦରଖାସ୍ତ

**ପ୍ରାପକ,**

**ଲୋକ ସୂଚନା ଅଧିକାରୀ**
**(କାର୍ଯ୍ୟାଳୟର ନାମ ଓ ଠିକଣା)**

1. ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ନାମ -
2. ପିତା / ସ୍ୱାମୀଙ୍କ ନାମ -
3. ସ୍ଥାୟୀ ଠିକଣା -
4. ଦରଖାସ୍ତକାରୀଙ୍କ ପରିଚୟ ସଂପର୍କୀତ ସବିଶେଷ ବିବରଣୀ -
5. **ଆବଶ୍ୟକ ସୂଚନାର ବିଶଦ ବିବରଣୀ**
   - କ. ସୂଚନାର ବିଷୟବସ୍ତୁ -
   - ଖ. ଜାଣିବାକୁ ଚାହୁଁଥିବା ସୂଚନାଟି କେଉଁ ସମୟର -
   - ଗ. ଜାଣିବାକୁ ଚାହୁଁଥିବା ନିର୍ଦ୍ଦିଷ୍ଟ ସୂଚନାର ବିବରଣୀ -
   - ଘ. ସୂଚନାଟି ବ୍ୟକ୍ତିଗତ ଭାବେ କିମ୍ବା ଡାକଦ୍ୱାରା ନେବାକୁ ଚାହାନ୍ତି -
     (ଡାକ ଦ୍ୱାରା ନେଲେ, ଏହି ଖର୍ଚ୍ଚ ଦରଖାସ୍ତକାରୀ ବହନ କରିବେ)
   - ଙ. ଯଦି ଡାକ ଦ୍ୱାରା ନେବେ ତେବେ ତାହା -
     (ସାଧାରଣ ଡାକ କି ରେଜିଷ୍ଟର୍ଡ ପୋଷ୍ଟ କି ସ୍ପିଡ୍‌ପୋଷ୍ଟ)
6. ସୂଚନାଟି ପଠାଇବାର ଠିକଣା ଏବଂ ଏହା କେଉଁ ଆକାରରେ ପଠାଯିବ -
7. ପୂର୍ବରୁ ଏହି ସୂଚନାଟି ପ୍ରଦାନ କରାଯାଇଛି କି -
8. ଏହି ସୂଚନାଟି ସଂପୃକ୍ତ ସରକାରୀ କର୍ତ୍ତୃପକ୍ଷ ସାଧାରଣଭାବେ ଉପଲବ୍‌ଧ କରାଇନାହାନ୍ତି କି -
9. ଆବଶ୍ୟକ ଫିସ୍ ପ୍ରଦାନ କରିବାକୁ ଆପଣ ପ୍ରସ୍ତୁତ କି -
10. ଆପଣ ଦରଖାସ୍ତ ଫିସ୍ ଦାଖଲ କରିଛନ୍ତି କି -
    (ଯଦି 'ହଁ', ତେବେ ଦାଖଲ ସଂପର୍କୀୟ ବିଶଦ୍ ବିବରଣୀ ଦିଅନ୍ତୁ)
11. ଆପଣ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବର୍ଗର ଅନ୍ତର୍ଭୁକ୍ତ କି, ଆବଶ୍ୟକ ପ୍ରମାଣପତ୍ର ସଂଲଗ୍ନ କରିଛନ୍ତି କି -

**ସ୍ଥାନ :**
**ତାରିଖ :**

**ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ସ୍ୱାକ୍ଷର**
**ଠିକଣା :**

ଲୋକ ସୂଚନା ଅଧିକାରୀଙ୍କ କାର୍ଯ୍ୟାଳୟ

ସୂଚନା ପ୍ରଦାନ ନିମନ୍ତେ
ଶ୍ରୀ/ଶ୍ରୀମତୀ/ସୁଶ୍ରୀ ____________________
ଠିକଣା ____________________ ଙ୍କ ଦରଖାସ୍ତ ତା. __________ ରେ ଗ୍ରହଣ କରାଗଲା ।

ସ୍ଥାନ : ଲୋକ ସୂଚନା ଅଧିକାରୀଙ୍କ ସଂପୂର୍ଣ୍ଣ ନାମ
ତାରିଖ : ପଦନାମ ଏବଂ ମୋହର

---

## ଫର୍ମ - ଖ
## (ନିୟମ 4(2) ଦ୍ରଷ୍ଟବ୍ୟ)
## ଅର୍ଥ ପ୍ରଦାନ ନିମନ୍ତେ ପତ୍ର

ପ୍ରେରକ,
ଲୋକ ସୂଚନା ଅଧିକାରୀଙ୍କ ନାମ ଓ ପଦନାମ

ପ୍ରାପକ,
ଦରଖାସ୍ତକାରୀଙ୍କ ନାମ
ଠିକଣା

ମହାଶୟ,

____________________ ସୂଚନା ପାଇଁ ନିମ୍ନସ୍ୱାକ୍ଷରକାରୀଙ୍କୁ ସମ୍ବୋଧିତ ଆପଣଙ୍କ ତା.____________________ ର ଦରଖାସ୍ତ ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରୁଛି । ମୁଁ ଏଠାରେ ଆପଣଙ୍କୁ ସୂଚାଇ ଦେବାକୁ ଚାହେଁ ଯେ ନିମ୍ନସ୍ୱାକ୍ଷରକାରୀ ଆପଣଙ୍କୁ ଆବଶ୍ୟକ ସୂଚନାଟି ଦେବାପାଇଁ, ସୂଚନା ପ୍ରଦାନର ଖର୍ଚ୍ଚ ବାବଦରେ ଆପଣ ନିମ୍ନଲିଖିତ ପରିମାଣର ଅର୍ଥ ଜମା କରିପାରନ୍ତି ।

ଦୟାକରି, ଏହି ପତ୍ର ପାଇବାର ପନ୍ଦର ଦିନ ମଧ୍ୟରେ ଦେୟ ଜମା କରନ୍ତୁ, ନଚେତ୍ ଆପଣଙ୍କ ଆବେଦନପତ୍ର ନାକଚ ହୋଇଯିବ ।

ଫିସ୍ :

ଆପଣଙ୍କ ବିଶ୍ୱସ୍ତ

ସ୍ଥାନ : ଲୋକ ସୂଚନା ଅଧିକାରୀ
ତାରିଖ : ମୋହର

# ଫର୍ମ - ଗ

## (ନିୟମ 5(1) ଓ (2) ଦ୍ରଷ୍ଟବ୍ୟ)

## ଆବେଦନ ନାକଚ ହେବାର ସୂଚନା

**ମହାଶୟ,**

ନିମ୍ନଲିଖିତ କାରଣ ଯୋଗୁଁ, ଆପଣ ଚାହିଁଥିବା ସୂଚନାଟି ପ୍ରଦାନ କରିବାପାଇଁ ନିମ୍ନସ୍ୱାକ୍ଷରକାରୀ ଦୁଃଖର ସହିତ ନିଜର ଅସାମର୍ଥ୍ୟ ପ୍ରକାଶ କରୁଛନ୍ତି -

(1) ଏହା, ଅଧିନିୟମର ଧାରା 8 ଓ 9 ଅନୁଯାୟୀ, ସୂଚନା ପ୍ରଦାନରୁ ସ୍ୱତନ୍ତ୍ର ଭାବେ ଛାଡ଼ ହୋଇଥିବା ଶ୍ରେଣୀର ଅନ୍ତର୍ଗତ ।

(2) ଆପଣଙ୍କ ଦରଖାସ୍ତ ସବୁ ଦୃଷ୍ଟିରୁ ସଂପୂର୍ଣ୍ଣ ନଥିଲା ।

(3) ଆପଣଙ୍କ ପରିଚୟ ସନ୍ତୋଷଜନକ ନୁହେଁ ।

(4) ସର୍ବସାଧାରଣଙ୍କ ପାଇଁ ପ୍ରକାଶିତ ବିଷୟରେ, ଏହି ସୂଚନା ରହିଛି ।

(5) ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ, ଆପଣ ସୂଚନା ପ୍ରଦାନ ଖର୍ଚ୍ଚର ପରିମାଣ ଦାଖଲ କରିନାହାନ୍ତି ।

(6) ଅଧିନିୟମର ଧାରା 24(4) ଅନୁଯାୟୀ, ଆପଣ ଚାହିଁଥିବା ସୂଚନାଟି ପ୍ରଦାନ କରିବା ନିଷେଧ ।

(7) ଏହି ସୂଚନାଟି କୌଣସି ବ୍ୟକ୍ତିଗତ ଗୋପନୀୟତାକୁ ଅଯଥାରେ କ୍ଷୁଣ୍ଣ କରିପାରେ ।

(8) ଆପଣ ଚାହିଁଥିବା ସୂଚନାଟି ଆମର ୱେବସାଇଟ୍ ________________________ ରେଉପଲବ୍ଧ । ଆପଣ ଏଥିରୁ ସୂଚନାଟିକୁ ସଂଗ୍ରହ କରିପାରନ୍ତି ।

(9) ଅନ୍ୟ କୌଣସି କାରଣ ପାଇଁ ଦୟାକରି ଅପର ପୃଷ୍ଠା ଦେଖନ୍ତୁ ।

ଆପଣ ଯଦି ଉପରୋକ୍ତ ପ୍ରତ୍ୟାଖାନ ଯୋଗୁଁ ଅସନ୍ତୁଷ୍ଟ ହୁଅନ୍ତି, ତା'ହେଲେ ଏହି ପତ୍ର ପାଇବାର 30 ଦିନ ମଧ୍ୟରେ ____________________ ଙ୍କ ନିକଟରେ ଅପିଲ୍ କରିପାରନ୍ତି ।

ସ୍ଥାନ :

ତାରିଖ :

ଲୋକ ସୂଚନା ଅଧିକାରୀଙ୍କ<br>ନାମ ଓ ପଦନାମ

ପ୍ରାପକ,

ଶ୍ରୀ/ଶ୍ରୀମତୀ

# ଫର୍ମ - ଘ

## (ନିୟମ 7(1) ଦ୍ରଷ୍ଟବ୍ୟ)

### ଅଧିନିୟମର ଧାରା 19(1) ଅନୁଯାୟୀ ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କ ନିକଟରେ ଅପିଲ୍ କରିବା ନିମନ୍ତେ ସ୍ମାରକପତ୍ରର ଫର୍ମ

**ପ୍ରେରକ,**

(ଦରଖାସ୍ତକାରୀଙ୍କ ନାମ ଓ ଠିକଣା)

**ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କ ସମକ୍ଷରେ**

1. ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ନାମ :
2. ଠିକଣା :
3. ଲୋକ ସୂଚନା ଅଧିକାରୀଙ୍କ ସବିଶେଷ ବିବରଣୀ :
4. ଯେଉଁ ଆଦେଶ ବିରୁଦ୍ଧରେ ଅପିଲ୍ କରାଯାଇଛି

   ସେଇ ଆଦେଶର ପ୍ରାପ୍ତି ତାରିଖ :
5. ଅପିଲ୍ କରିବାର ଶେଷ ତାରିଖ :
6. ସୂଚନାର ସବିଶେଷ ବିବରଣୀ :

   (କ) ଆବଶ୍ୟକ ସୂଚନାର ସ୍ୱରୂପ ଓ ବିଷୟବସ୍ତୁ :

   (ଖ) ସୂଚନାଟି ଯେଉଁ କାର୍ଯ୍ୟାଳୟ ବା ବିଭାଗ ସହିତ ସଂପର୍କିତ, ତାହାର ନାମ :
7. ଅପିଲ୍ କରିବାର କାରଣ :

(ଯଦି ଅନ୍ୟ କୌଣସି ବିଷୟ ଉଲ୍ଲେଖ କରିବାର ଥାଏ, ତେବେ ଅନ୍ୟ ଏକ କାଗଜରେ ଲେଖି ସଂଯୋଗ କରନ୍ତୁ)

## ସତ୍ୟାପନ

ମୁଁ ______________________ (ଆବେଦନକାରୀଙ୍କ ନାମ) ପିତା/ସ୍ୱାମୀ ଶ୍ରୀ ______________________ ଏତଦ୍ଦ୍ୱାରା ଘୋଷଣା କରୁଅଛି ଯେ ଅପିଲ୍‌ରେ ଦିଆଯାଇଥିବା ସମସ୍ତ ବିବରଣୀ, ମୋର ସର୍ବୋତ୍ତମ ଜ୍ଞାନ ଏବଂ ବିଶ୍ୱାସ ମତେ ସତ୍ୟ ଏବଂ ମୁଁ କୌଣସି ବିଷୟଗତ ସତ୍ୟାସତ୍ୟ ଲୁଚାଇ ନାହିଁ ।

ଅପିଲକାରୀଙ୍କ ସ୍ୱାକ୍ଷର

ସ୍ଥାନ :

ତାରିଖ :

ପ୍ରାପକ,

ଅପିଲ୍ କର୍ତ୍ତୃପକ୍ଷଙ୍କ ନାମ ଓ ଠିକଣା

# ଫର୍ମ - ଙ

## (ନିୟମ 7(3) ଦ୍ରଷ୍ଟବ୍ୟ)

## ଅଧିନିୟମର ଧାରା 19(3) ଅନୁଯାୟୀ ଦ୍ୱିତୀୟ ଅପିଲ୍

ପ୍ରେରକ

(ଆବେଦନକାରୀଙ୍କ ନାମ ଓ ଠିକଣା)

ପ୍ରାପକ

ରାଜ୍ୟ ସୂଚନା ଆୟୋଗ

1. ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ନାମ :
2. ଠିକଣା :
3. ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କ ସବିଶେଷ ବିବରଣୀ :
4. ଯେଉଁ ଆଦେଶ ବିରୁଦ୍ଧରେ ଅପିଲ୍
   କରାଯାଇଛି ସେହି ଆଦେଶପ୍ରାପ୍ତିର ତାରିଖ :
5. ଅପିଲ୍ କରିବାର ଶେଷ ତାରିଖ :
6. ସୂଚନାର ସବିଶେଷ ବିବରଣୀ :
   (କ) ଆବଶ୍ୟକ ସୂଚନାର ସ୍ୱରୂପ ଓ ବିଷୟବସ୍ତୁ :
   (ଖ) ସୂଚନାଟି ଯେଉଁ କାର୍ଯ୍ୟାଳୟ ବା
   ବିଭାଗ ସହିତ ସଂପର୍କିତ ତାହାର ନାମ :
7. ଅପିଲ୍ କରିବାର କାରଣ :
   (ଅନ୍ୟାନ୍ୟ ବିଷୟ, ଏକ ପୃଥକ୍ କାଗଜରେ ଲେଖି ସଂଯୋଗ କରନ୍ତୁ)

## ସତ୍ୟାପନ

ମୁଁ ________________________________ (ଆବେଦନକାରୀଙ୍କ ନାମ) ପିତା/ସ୍ୱାମୀ ଶ୍ରୀ ________________________________ ଏତଦ୍ୱାରା ଘୋଷଣା କରୁଅଛି ଯେ ଅପିଲ୍‌ରେ ଦିଆଯାଇଥିବା ସମସ୍ତ ବିବରଣୀ, ମୋର ସର୍ବୋତ୍ତମ ଜ୍ଞାନ ଏବଂ ବିଶ୍ୱାସ ମତେ ସତ୍ୟ ଏବଂ ମୁଁ କୌଣସି ବିଷୟଗତ ସତ୍ୟାସତ୍ୟ ଲୁଚାଇ ନାହିଁ ।

ଅପିଲକାରୀଙ୍କ ସ୍ୱାକ୍ଷର

ସ୍ଥାନ :

ତାରିଖ :

ପ୍ରାପକ,

ଓଡ଼ିଶା ରାଜ୍ୟ ସୂଚନା ଆୟୋଗ

## ଫର୍ମ - ଚ
### (ନିୟମ 11(1) ଦ୍ରଷ୍ଟବ୍ୟ)
### ସୂଚନା ରେଜିଷ୍ଟରର ନମୁନା

| କ୍ରମିକ ସଂଖ୍ୟା | ଦରଖାସ୍ତର ତାରିଖ | ସୂଚନା ଚାହୁଁଥିବା ବ୍ୟକ୍ତିଙ୍କ ନାମ | ବ୍ୟକ୍ତିଙ୍କ ଠିକଣା | କି ପ୍ରକାର ସୂଚନା | ସୂଚନା ଚାହୁଁଥିବା ବ୍ୟକ୍ତି ସମସ୍ତ ଔପଚାରିକତା ପାଳନ କରିଛନ୍ତି କି | ଯାହାଙ୍କଠାରୁ ସୂଚନା ସଂଗ୍ରହ କରାଯିବ,ସେହି କର୍ତ୍ତୃପକ୍ଷଙ୍କ ନାମ | ସୂଚନା ପ୍ରଦାନ କରାଯିବାର ତାରିଖ | କେଉଁ ତାରିଖରେ ସଂପୃକ୍ତ କର୍ତ୍ତୃପକ୍ଷ/ କର୍ତ୍ତୃପକ୍ଷମାନଙ୍କୁ ଆବଶ୍ୟକ ସୂଚନା ଯୋଗାଇ ଦେବାପାଇଁ ଅନୁରୋଧ କରାଗଲା |
|---|---|---|---|---|---|---|---|---|
| 1 | 2 | 3. | 4 | 5 | 6 | 7 | 8 | 9 |

| ରିମାଇଣ୍ଡର ପଠାଇବା ତାରିଖ ଓ ସଂଖ୍ୟା | କେଉଁ ତାରିଖରେ ଲୋକ ସୂଚନା ଅଧିକାରୀଙ୍କ ନିକଟରେ କର୍ତ୍ତୃପକ୍ଷଙ୍କଠାରୁ ସୂଚନା ପହଞ୍ଚିଲା | ସୂଚନା ଚାହୁଁଥିବା ବ୍ୟକ୍ତିଙ୍କୁ କେଉଁ ତାରିଖରେ ସୂଚନା ପ୍ରଦାନ କରାଗଲା | ସୂଚନା ପ୍ରଦାନ ନ କରିବାର ସଂକ୍ଷିପ୍ତ କାରଣ | ମନ୍ତବ୍ୟ |
|---|---|---|---|---|
| 10 | 11 | 12 | 13 | 14 |

## ଫର୍ମ - ଛ
### (ନିୟମ 11(2) ଦ୍ରଷ୍ଟବ୍ୟ)
### ନଗଦ ରେଜିଷ୍ଟର

| ଦରଖାସ୍ତକାରୀଙ୍କ ନାମ ଓ ଠିକଣା | ଦରଖାସ୍ତର ତାରିଖ | ଅର୍ଥ ଦାଖଲ କରିବାର ତାରିଖ | ଫିସ୍‌ର ସବିଶେଷ ବିବରଣୀ ଚାଲାଣ/ବ୍ୟାଙ୍କ ଡ୍ରାଫ୍ଟ/ନଗଦ | ଫେରସ୍ତ ଯଦିଥାଏ | ମନ୍ତବ୍ୟ |
|---|---|---|---|---|---|
| 1 | 2 | 3 | 4 | 5 | 6 |

## ଅନୁସୂଚୀ

(ନିୟମ 4 ଓ 7 ଦ୍ରଷ୍ଟବ୍ୟ)

ସୂଚନା ଯୋଗାଇ ଦେବା ନିମନ୍ତେ ଦାଖଲ କରିବାକୁ ଥିବା ଫିସ୍/ଅର୍ଥର ପରିମାଣ

### ଭାଗ - I

| | | ପରିମାଣ | ଦାଖଲ ପଦ୍ଧତି |
|---|---|---|---|
| | (କ) ଦରଖାସ୍ତ ଫିସ୍ : | | |
| (I) | ସୂଚନା ପାଇବା ନିମନ୍ତେ ଦରଖାସ୍ତ | ପ୍ରତି ଦରଖାସ୍ତକୁ କୋଡ଼ିଏ ଟଙ୍କା | ଟ୍ରେଜରୀ ଚାଲାଣ/ ନଗଦ ଅର୍ଥ |
| (II) | ପ୍ରଥମ ଅପିଲ୍ ନିମନ୍ତେ ଦରଖାସ୍ତ ଫିସ୍ | ଚାଳିଶ ଟଙ୍କା | କୋର୍ଟ ଫି ଷ୍ଟାମ୍ପ |
| (III) | ଦ୍ୱିତୀୟ ଅପିଲ୍ ନିମନ୍ତେ ଦରଖାସ୍ତ ଫିସ୍ | ପଚାଶ ଟଙ୍କା | କୋର୍ଟ ଫି ଷ୍ଟାମ୍ପ |

### ଭାଗ - II

| | | | |
|---|---|---|---|
| | (ଖ) ସୂଚନା ପ୍ରଦାନ ଫିସ୍ : | | |
| (I) | ନଥିପତ୍ରର ନିରୀକ୍ଷଣ | ପ୍ରତି ଏକ ଘଣ୍ଟା କିମ୍ବା ଏହାର ଅଂଶବିଶେଷ ପାଇଁ ପନ୍ଦର ଟଙ୍କା | ନଗଦ ଅର୍ଥ |
| (II) | A4 ସାଇଜ୍ କାଗଜର ଗୋଟିଏ ପୃଷ୍ଠା ପାଇଁ | | |
| | କ. ପ୍ରତି ଟାଇପ୍/ଜେରକ୍ସ କପି ପିଛା | ପାଞ୍ଚ ଟଙ୍କା | ନଗଦ ଅର୍ଥ |
| | ଖ. କମ୍ପ୍ୟୁଟର ଦ୍ୱାରା ପ୍ରସ୍ତୁତ କପି ପିଛା | ଦଶ ଟଙ୍କା | ନଗଦ ଅର୍ଥ |
| (III) | କଭର ସହିତ ସିଡି | ପ୍ରତ୍ୟେକ ସିଡି ପାଇଁ ଏକ ଶହ ଟଙ୍କା | ନଗଦ ଅର୍ଥ |
| (IV) | ଫ୍ଲପି ଡିସ୍କ (1.44 ଏମ୍.ବି.) | ପ୍ରତ୍ୟେକ ଫ୍ଲପି ପାଇଁ ଏକ ଶହ ଟଙ୍କା | ନଗଦ ଅର୍ଥ |
| (V) | ମାନଚିତ୍ର ଏବଂ ନକ୍ସା | ଶ୍ରମ, ଯନ୍ତ୍ରପାତି ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚକୁ ହିସାବ କରି, ଲୋକ ସୂଚନା ଅଧିକାରୀ ଯଥାର୍ଥ ଦେୟର ପରିମାଣ ସ୍ଥିର କରିବେ | ନଗଦ ଅର୍ଥ |
| (VI) | ଭିଡ଼ିଓ କ୍ୟାସେଟ୍/ମାଇକ୍ରୋଫିଲ୍ମ/ ମାଇକ୍ରୋଫିସ୍ | - ଏଜନ - | ନଗଦ ଅର୍ଥ |
| (VII) | କୌଣସି ଦ୍ରବ୍ୟର ପ୍ରାମାଣିକ ନମୁନା | - ଏଜନ - | ନଗଦ ଅର୍ଥ |

**ବି:ଦ୍ର:** ସମସ୍ତ ଅର୍ଥ ପ୍ରଦାନ କ୍ଷେତ୍ରରେ ଉଚିତ ଓ ଅଧିପ୍ରମାଣିତ ଅର୍ଥ ପ୍ରାପ୍ତି ରସିଦ ପ୍ରଦାନ କରାଯିବ । ଦରଖାସ୍ତ ଫର୍ମ 'କ'ରେ କାର୍ଯ୍ୟାଳୟ ଅର୍ଥ ପ୍ରାପ୍ତି ରସିଦ ସଂଖ୍ୟା ଉଲ୍ଲେଖ କରିବେ ।



# ଶ୍ରୀ ଡି.ଏନ୍. ପାଢ଼ୀଙ୍କ ପରିଚୟ

## (ଅବସରପ୍ରାପ୍ତ ଆଇ.ଏ.ଏସ୍.)

**ଶ୍ରୀ** ଧୀରେନ୍ଦ୍ର ନାଥ ପାଢ଼ୀ ହେଉଛନ୍ତି ଓଡ଼ିଶା ରାଜ୍ୟ ମୁଖ୍ୟ ସୂଚନା କମିଶନର । ଓଡ଼ିଶାର ଗଜପତି ଜିଲ୍ଲା ପାରଳାଖେମୁଣ୍ଡି ଅଞ୍ଚଳର ଶ୍ରୀ ପାଢ଼ୀ ହେଉଛନ୍ତି ଓଡ଼ିଶାର ପୂର୍ବତନ ପୋଲିସ୍ ଆଇ.ଜି. ସ୍ୱର୍ଗତଃ ଆର.କେ. ପାଢ଼ୀ, ଆଇ.ପି.ଙ୍କ ପୁତ୍ର । ସେ ଭାରତୀୟ ପ୍ରଶାସନିକ ସେବାର ଜଣେ ପୂର୍ବତନ ସଦସ୍ୟ ।

୧୯୯୧-୯୨ ଶିକ୍ଷା ବର୍ଷରେ ଶ୍ରୀ ଡି.ଏନ୍. ପାଢ଼ୀ ସଂଯୁକ୍ତ ରାଷ୍ଟ୍ରର ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଜଣେ ପରିଦର୍ଶକ ଗବେଷକ (Visiting Fellow) ଭାବରେ ଯୋଗ ଦେଇ ''ଭାରତ-ଇଉରୋପ ସଂଘର ବାଣିଜ୍ୟ ସଂପର୍କ'' ଉପରେ ଗବେଷଣା କରିଥିଲେ । ଇଲେକ୍‌ଟ୍ରୋନିକ୍ସରେ ପାରଦର୍ଶିତା ସହ ସେ କଟକର ରେଭେନ୍ସା ମହାବିଦ୍ୟାଳୟରୁ ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ ଏବଂ ଆନ୍ତର୍ଜାତୀୟ ବାଣିଜ୍ୟ, ଆନ୍ତର୍ଜାତୀୟ ଆର୍ଥିକ ପରିଚାଳନା ଓ ଶିଳ୍ପ ପରିଚାଳନାରେ ଦକ୍ଷତାର ସହ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଏମ୍.ବି.ଏ. ଡିଗ୍ରୀ ଲାଭ କରିଥିଲେ ।

୧୯୭୧ ମସିହାରେ ଶ୍ରୀ ପାଢ଼ୀ ଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେଇଥିଲେ । ଓଡ଼ିଶାରେ ବହୁତ ଗୁରୁତ୍ୱପୂର୍ଣ୍ଣ ପଦବୀ ଓ ଦାୟିତ୍ୱ ନିର୍ବାହ କରିବା ବ୍ୟତୀତ ବିହାର ସରକାର, ନୂଆଦିଲ୍ଲୀରେ ପ୍ରତିରକ୍ଷା ମନ୍ତ୍ରଣାଳୟ, ଭାରତ ସରକାରଙ୍କ ଉପଭୋକ୍ତା, ଖାଦ୍ୟ ଓ ସାଧାରଣ ବଣ୍ଟନ ମନ୍ତ୍ରଣାଳୟରେ ଅତିରିକ୍ତ ସଚିବ ତଥା ବିତ୍ତ ପରାମର୍ଶଦାତା ଏବଂ ଭାରତ ସରକାରଙ୍କ ଶକ୍ତି ମନ୍ତ୍ରଣାଳୟରେ ସ୍ୱତନ୍ତ୍ର ସଚିବ ଭାବେ କାର୍ଯ୍ୟ କରିଛନ୍ତି । ଭାରତୀୟ ପ୍ରଶାସନିକ ସେବାରେ ଯୋଗଦେବା ପୂର୍ବରୁ ସେ ନୂଆଦିଲ୍ଲୀରେ ଷ୍ଟେଟବ୍ୟାଙ୍କ ଅଫ୍ ଇଣ୍ଡିଆର ପ୍ରୋବେସନାରୀ ଅଫିସର ଭାବେ କାର୍ଯ୍ୟ କରିଛନ୍ତି ।

ଓଡ଼ିଶା ସରକାରଙ୍କ ଅଧୀନରେ ସେ ଯେଉଁ ପଦବୀଗୁଡ଼ିକରେ କାର୍ଯ୍ୟ କରିଛନ୍ତି, ସେସବୁ ହେଲା - ଜଙ୍ଗଲ, ମତ୍ସ୍ୟ ଏବଂ ପଶୁ ସମ୍ପଦ ବିଭାଗଗୁଡ଼ିକରେ ଉପଶାସନ ସଚିବ / ଯୁଗ୍ମ ଶାସନ ସଚିବ / ଅତିରିକ୍ତ ଶାସନ ସଚିବ, ପର୍ଯ୍ୟଟନ, ସଂସ୍କୃତି ଓ କ୍ରୀଡ଼ା ଓ ସୂଚନା ଓ ଲୋକ ସଂପର୍କ ବିଭାଗଗୁଡ଼ିକରେ ନିର୍ଦ୍ଦେଶକ, ଓଡ଼ିଶା ପର୍ଯ୍ୟଟନ ବିକାଶ ନିଗମର ପ୍ରତିଷ୍ଠାତା ପରିଚାଳନା ନିର୍ଦ୍ଦେଶକ, ଗଂଜାମ କୋରାପୁଟ ବୃହତ୍ ବନ୍ଦୋବସ୍ତ କାର୍ଯ୍ୟର ବନ୍ଦୋବସ୍ତ ଅଧିକାରୀ, ଗୋଷ୍ଠୀ ଉନ୍ନୟନ, ଗ୍ରାମାଞ୍ଚଳ ପୁନର୍ଗଠନ ଓ ସମାଜ ମଙ୍ଗଳର ନିର୍ଦ୍ଦେଶକ, ହରିଜନ ଏବଂ ଆଦିବାସୀ କଲ୍ୟାଣ ନିର୍ଦ୍ଦେଶକ, ଶିଳ୍ପ ବିଭାଗର ଅତିରିକ୍ତ ଶାସନ ସଚିବ, ମୟୂରଭଞ୍ଜ ଜିଲ୍ଲାର ଜିଲ୍ଲାପାଳ ତଥା ଜିଲ୍ଲା ମାଜିଷ୍ଟ୍ରେଟ୍, ଓଡ଼ିଶାର ମାନ୍ୟବର ରାଜ୍ୟପାଳଙ୍କର କମିଶନ୍‌ର ତଥା ଶାସନ ସଚିବ, ସୂଚନା ଓ ଲୋକ ସଂପର୍କ, ବିଦ୍ୟାଳୟ ଓ ଗଣଶିକ୍ଷା, ପର୍ଯ୍ୟଟନ, ସଂସ୍କୃତି, କ୍ରୀଡ଼ା ଓ ଯୁବସେବା ବିଭାଗଗୁଡ଼ିକରେ କମିଶନର ତଥା ଶାସନ ସଚିବ, ଓଡ଼ିଶାର ସ୍ୱତନ୍ତ୍ର ରିଲିଫ୍ କମିଶନର, ଇସ୍ପାତ ଓ ଖଣି ଏବଂ ଶକ୍ତି ବିଭାଗଗୁଡ଼ିକରେ ପ୍ରଧାନ ଶାସନ ସଚିବ, ଓ.ଏସ୍.ପି.ସି.ର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ, ଓ.ପି.ଜି.ସି.ର ଅଧକ୍ଷ ଓ ଓଡ଼ିଶା ସରକାରଙ୍କ ନୂଆଦିଲ୍ଲୀରେ ଅବସ୍ଥାପିତ ରେସିଡେଣ୍ଟ କମିଶନର ।

୧୯୯୬-୯୭ ମସିହାରେ ସେ ଓଡ଼ିଶା ଓ ମଧ୍ୟପ୍ରଦେଶର ପୂର୍ବଭାଗର କେତେକାଂଶ (ବର୍ତ୍ତମାନ ଛତିଶଗଡ଼ ରାଜ୍ୟ ଏଥିରେ ଅନ୍ତର୍ଭୁକ୍ତ)କୁ ନେଇ କାର୍ଯ୍ୟ କରୁଥିବା ରୋଟାରୀ ଇଣ୍ଟରନ୍ୟାସ୍‌ନାଲ୍ ୩୨୬୦ର ଗଭର୍ଣ୍ଣର ଥିଲେ । ରୋଟାରୀ ଫାଉଣ୍ଡେସନ୍‌ରେ ଉଲ୍ଲେଖନୀୟ ସେବା ନିମନ୍ତେ ସେ ପ୍ରଶଂସାପତ୍ର ସହିତ ରୋଟାରୀର ସର୍ବୋଚ୍ଚ ଆନ୍ତର୍ଜାତୀୟ ପୁରସ୍କାର ''ସର୍ଭିସ୍ ଆବୋଭ ସେଲ୍‌ଫ'' ସମ୍ମାନରେ ଭୂଷିତ । ୧୯୯୭-୯୮ ବର୍ଷଠାରୁ ରୋଟାରୀ ଇଣ୍ଟର୍‌ନ୍ୟାସ୍‌ନାଲର ଭାରତ ଜାତୀୟ ପୋଲିଓ ପ୍ଲସ୍ କମିଟିର ସଦସ୍ୟ ରହି ରୋଟାରୀ ଇଣ୍ଟରନ୍ୟାସ୍‌ନାଲ୍‌ର ରୋଟାରୀ ଫାଉଣ୍ଡେସନ୍ ତରଫରୁ ଦକ୍ଷିଣ-ପୂର୍ବ ଏସିଆରେ ପୋଲିଓମୁକ୍ତ ବିଶ୍ୱକ୍ଷେତ୍ରରେ ସମ୍ମାନଜନକ ଆଞ୍ଚଳିକ ସେବା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ସାମାଜିକ ସେବା କ୍ଷେତ୍ରରେ ଶ୍ରୀ ପାଢ଼ୀଙ୍କର ଅତ୍ୟନ୍ତ ଆଗ୍ରହ ରହିଛି । ତାଙ୍କର ଯେଉଁସବୁ ଦିଗରେ ବୃତ୍ତିଗତ ଆଗ୍ରହ ରହିଛି ସେସବୁ ହେଲା - ମାନବ ସମ୍ବଳ ବିକାଶ, ପିଲାମାନଙ୍କ ଅଧିକାର, ଆନ୍ତର୍ଜାତୀୟ ବାଣିଜ୍ୟ, ଶିଳ୍ପ ବ୍ୟବସାୟୀକରଣ, ଆନ୍ତର୍ଜାତୀୟ ଆର୍ଥିକ

ପରିଚାଳନା, ସୁନିର୍ଦ୍ଦିଷ୍ଟ ବ୍ୟବସାୟ ପରିଚାଳନା ଓ ପର୍ଯ୍ୟଟନ ପରିଚାଳନା । ସେ ହେଉଛନ୍ତି ଇନ୍‌ଷ୍ଟିଚ୍ୟୁଟ ଅଫ୍ ଡାଇରେକ୍ଟରସ୍ ଆଣ୍ଡ୍ କାଉନ୍‌ସିଲ୍ ଫର୍ କର୍‌ପୋରେଟ୍ ଗଭର୍ଣ୍ଣାନ୍ସ (ଓଡ଼ିଶା ଅଧ୍ୟାୟ)ର ପୂର୍ବତନ ଅଧ୍ୟକ୍ଷ, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଆଡ୍‌ମିନିଷ୍ଟ୍ରେସନ୍‌ସ (ଓଡ଼ିଶା ଶାଖା)ର ପୂର୍ବତନ ଅଧ୍ୟକ୍ଷ, ସେଣ୍ଟର ଫର୍ ଷ୍ଟ୍ରାଟେଜିକ୍ ଇନିସିଏଟିଭ୍‌ସ ଇନ୍ ପବ୍ଲିକ୍ ଆଡ୍‌ମିନିଷ୍ଟ୍ରେସନ୍ (ଆଇ.ଆଇ.ପି.ଏ.), ଓଡ଼ିଶାର ନିର୍ଦ୍ଦେଶକ, ୱାର୍ଲଡ ୱାଇଡ୍ ଫଣ୍ଡ୍ ଫର୍ ନେଚ୍‌ର (ଭାରତ) ଓଡ଼ିଶା ଶାଖାର ପରାମର୍ଶଦାତା, ଭୁବନେଶ୍ୱର ମେଟ୍ରୋପଲିଜ୍ ମ୍ୟାନେଜ୍‌ମେଣ୍ଟ ଆସୋସିଏସନ୍‌ର କାର୍ଯ୍ୟକାରୀ ସଭାପତି ଓ ଇଣ୍ଡିଆନ୍ ଆସୋସିଏସନ୍ ଅଫ୍ କିକ୍‌ନକ୍ସି ଅରଗାନାଇଜେସନ୍‌ର ଜାତୀୟ ସଭାପତି । ଇଣ୍ଡିଆନ୍ ରେଡ୍‌କ୍ରସ ସୋସାଇଟିର ଅବୈତନିକ ସଚିବ ଏବଂ ଓଡ଼ିଶା ଷ୍ଟେଟ୍ କାଉନ୍‌ସିଲ ଫର୍ ଚାଇଲ୍‌ଡ ୱେଲଫେଆର୍‌ର ନିର୍ଦ୍ଦେଶକ ଭାବେ ମଧ୍ୟ ସେ କାର୍ଯ୍ୟ କରିଛନ୍ତି । ଇଣ୍ଡିଆନ୍ କାଉନ୍‌ସିଲ୍ ଫର୍ ଚାଇଲ୍‌ଡ ୱେଲଫେଆର୍, ନୂଆଦିଲ୍ଲୀର ସେ ଆଜୀବନ ସଦସ୍ୟ ଅଛନ୍ତି ।

ସେ ଭୁବନେଶ୍ୱରର ରମାଦେବୀ ମହିଳା ମହାବିଦ୍ୟାଳୟର ତର୍କ ଶାସ୍ତ୍ର ଓ ଦର୍ଶନ ଶାସ୍ତ୍ର ବିଭାଗର ପ୍ରାଧ୍ୟାପିକା ଓ ସଂପ୍ରତି ନୂଆଦିଲ୍ଲୀସ୍ଥ ବିଶ୍ୱବିଦ୍ୟାଳୟ ମଂଜୁରୀ ଆୟୋଗର ଜାତୀୟ ଗବେଷଣା ପୁରସ୍କାର କାର୍ଯ୍ୟକ୍ରମ ଅଧୀନରେ ଗବେଷଣାରତ ଡକ୍ଟର (ଶ୍ରୀମତୀ) ଦୀପା ପାଢ଼ୀ, ପି.ଏଚ୍.ଡି.ଙ୍କ ସହ ବିବାହ ବନ୍ଧନରେ ବାନ୍ଧି ହୋଇଛନ୍ତି । ସେମାନଙ୍କର ଦୁଇ ପୁତ୍ର, ରାଜବଂଶ (ସ୍ତ୍ରୀ- ରାଣୀ ଓ କନ୍ୟା- ଶାଶା) ଓ ଋଷିବଂଶ (ସ୍ତ୍ରୀ- ରିତି) ଚାକିରିରେ ଭଲ ଭାବରେ ଅବସ୍ଥାପିତ ।

---

# ରାଜ୍ୟରେ ୩ ଗୋଟି ବ୍ଲକ୍‌ସ୍ତରୀୟ ଗୋଦାମ ଘରର ନିର୍ମାଣ କାର୍ଯ୍ୟ ଚାଲୁ ରହିଥିବାବେଳେ ୨୦୦୬, ଜାନୁଆରୀ ସୁଦ୍ଧା ୨୯୪ଟି ଗୋଦାମ ଘରର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି

ସାଧାରଣ ବଣ୍ଟନ ବ୍ୟବସ୍ଥା ଜରିଆରେ ମିଳୁଥିବା ଖାଦ୍ୟଶସ୍ୟ ଓ ଅନ୍ୟାନ୍ୟ ସାମଗ୍ରୀଗୁଡ଼ିକୁ ମହଜୁଦ୍ କରି ରଖିବା ପାଇଁ ରାଜ୍ୟରେ ବ୍ଲକ୍‌ମାନଙ୍କରେ ୨୯୪ଟି ଗୋଦାମ ଘରର ନିର୍ମାଣ କାର୍ଯ୍ୟ ଜାନୁଆରୀ ୨୦୦୬ ସୁଦ୍ଧା ଶେଷ ହୋଇପାରିଛି । ନିର୍ମାଣ ସରିଥିବା ଗୋଦାମ ଘରମାନଙ୍କରେ ୫,୧୩୪୦ ମେଟ୍ରିକ୍ ଟନ୍ ଖାଦ୍ୟ ଶସ୍ୟ ମହଜୁଦ କରି ରଖାଯାଇ ପାରିବ ।

ଅନୁଗୁଳ ଜିଲ୍ଲାରେ ୭ଟି, ବଲାଙ୍ଗୀର ଜିଲ୍ଲାରେ ୫ଟି, ବାଲେଶ୍ୱର ଜିଲ୍ଲାରେ ୧୭ଟି, ଭଦ୍ରକ ଜିଲ୍ଲାରେ ୭ଟି, ବରଗଡ଼ ଜିଲ୍ଲାରେ ୭ଟି, ବୌଦ ଜିଲ୍ଲାରେ ୩ଟି, କଟକ ଜିଲ୍ଲାରେ ୧୪ଟି, ଦେଓଗଡ଼ ଜିଲ୍ଲାରେ ୩ଟି, ଢେଙ୍କାନାଳ ଜିଲ୍ଲାରେ ୮ଟି, ଗଜପତି ଜିଲ୍ଲାରେ ୬ଟି, ଗଂଜାମ ଜିଲ୍ଲାରେ ୨୨ଟି, ଜଗତସିଂହପୁର ଜିଲ୍ଲାରେ ୮ଟି, ଯାଜପୁର ଜିଲ୍ଲାରେ ୧୦ଟି, ଝାରସୁଗୁଡ଼ା ଜିଲ୍ଲାରେ ୪ଟି, କଳାହାଣ୍ଡି ଜିଲ୍ଲାରେ ୧୨ଟି, କେନ୍ଦ୍ରାପଡ଼ା ଜିଲ୍ଲାରେ ୯ଟି, କେଉଁଝର ଜିଲ୍ଲାରେ ୧୫ଟି, ଖୋର୍ଦ୍ଧା ଜିଲ୍ଲାରେ ୬ଟି, କୋରାପୁଟ ଜିଲ୍ଲାରେ ୧୪ଟି, ମାଲକାନଗିରି ଜିଲ୍ଲାରେ ୭ଟି, ମୟୂରଭଞ୍ଜ ଜିଲ୍ଲାରେ ୨୬ଟି, ନୂଆପଡ଼ା ଜିଲ୍ଲାରେ ୫ଟି, ନବରଂଗପୁର ଜିଲ୍ଲାରେ ୧୦ଟି, ନୟାଗଡ଼ ଜିଲ୍ଲାରେ ୮ଟି, ଫୁଲବାଣୀ ଜିଲ୍ଲାରେ ୪ଟି, ପୁରୀ ଜିଲ୍ଲାରେ ୧୧ଟି, ରାୟଗଡ଼ା ଜିଲ୍ଲାରେ ୧୧ଟି, ସମ୍ବଲପୁର ଜିଲ୍ଲାରେ ୮ଟି, ସୋନପୁର ଜିଲ୍ଲାରେ ୬ଟି ଓ ସୁନ୍ଦରଗଡ଼ ଜିଲ୍ଲାରେ ୨୧ଟି ବ୍ଲକ୍ ସ୍ତରୀୟ ଗୋଦାମ ଘରର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି । ବର୍ତ୍ତମାନ ବଲାଙ୍ଗୀର, ଗଜପତି ଏବଂ କଳାହାଣ୍ଡି ଜିଲ୍ଲାରେ ଗୋଟିଏ ଲେଖାଏଁ ବ୍ଲକ୍‌ସ୍ତରୀୟ ଗୋଦାମ ଘରର ନିର୍ମାଣ କାର୍ଯ୍ୟ ଚାଲୁ ରହିଛି ।



# ରାଜ୍ୟ ସୂଚନା କମିଶନର ଶ୍ରୀ ରାଧାମୋହନଙ୍କ ସଂପର୍କରେ ...

- ନୟାଗଡ଼, ଓଡ଼ିଶାର ପୁରୁଣା ରାଜକୁଡ଼ାଗ୍ରାମ ରଙ୍ଗଣିପାଟଣାରେ ୧୯୪୩ ମସିହା ଜାନୁଆରୀ ୩୦ ତାରିଖରେ ଜନ୍ମ ।
- ଓଡ଼ଗାଁରେ ସ୍କୁଲ ଶିକ୍ଷା ପରେ, ପୁରୀ ଏସ୍.ସି.ଏସ୍. ମହାବିଦ୍ୟାଳୟରୁ ଅର୍ଥନୀତିରେ ସମ୍ମାନସହ ସ୍ନାତକ । ୧୯୬୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରୟୋଗାତ୍ମକ ଅର୍ଥନୀତିରେ ମାଷ୍ଟର ଡିଗ୍ରୀ ହାସଲ ।
- ବିଭିନ୍ନ ସରକାରୀ ମହାବିଦ୍ୟାଳୟଗୁଡ଼ିକରେ ଅର୍ଥନୀତି ବିଷୟରେ ଶିକ୍ଷାଦାନ । ଭାରତ ସରକାରଙ୍କ ଅଧୀନରେ ତିନି ବର୍ଷ କାର୍ଯ୍ୟ ସଂପାଦନ ଏବଂ ଶିକ୍ଷାଦାନ ବ୍ୟତିରେକେ, ରାଜ୍ୟ ସରକାରଙ୍କ ସହ ବିଭିନ୍ନ ବିଭାଗ ଯଥା- ବିଜ୍ଞାନ, ବୈଷୟିକ କୌଶଳ ଏବଂ ପରିବେଶ, ଶିକ୍ଷା ଓ ଯୁବସେବା ଏବଂ ଗ୍ରାମ୍ୟ ଉନ୍ନୟନ ବିଭାଗରେ ବିଭିନ୍ନ ପଦପଦବୀରେ କାର୍ଯ୍ୟରତ । ୨୦୦୧ ମସିହା ଜାନୁଆରୀ ମାସରେ ପୁରୀ ଏସ୍.ସି.ଏସ୍. ମହାବିଦ୍ୟାଳୟ (ସ୍ୱୟଂ ଶାସିତ) ଅଧ୍ୟକ୍ଷ ରୂପେ ଅବସରପ୍ରାପ୍ତ ।
- ଜଣେ ସଦସ୍ୟ ରୂପେ ରାଜ୍ୟ ଯୋଜନା ବୋର୍ଡ଼ରେ କିଛି କାଳ ନିମନ୍ତେ ଅବସ୍ଥାପିତ । ଉପଦେଷ୍ଟା କମିଟି, ରାଜ୍ୟ ଜଳଛାୟା ମିଶନ, ଶିକ୍ଷା ସଂପର୍କିତ ଟାକ୍ସଫୋର୍ସ, ରାଜ୍ୟ ବନ୍ୟଜନ୍ତୁ ଉପଦେଷ୍ଟା କମିଟି, ଏନ୍.ଏସ୍.ଏସ୍. ଉପଦେଷ୍ଟା କମିଟି, ଯୁଗ୍ମ ବନ ପରିଚାଳନା ସଂପର୍କିତ ଷ୍ଟିଅରିଂ କମିଟି, ଭାରତ ସରକାରଙ୍କ ଏନ୍.ଏସ୍.ଏସ୍. ମୂଲ୍ୟାୟନ କମିଟିର ସଦସ୍ୟ ପଦ ଲାଭ ।
- ବର୍ତ୍ତମାନ ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼, ବୟସ୍କ ଲୋକଙ୍କ ଶିକ୍ଷା ପାଇଁ ରାଜ୍ୟ ସମ୍ବଳ କେନ୍ଦ୍ରର ଗଭର୍ଣ୍ଣି ବଡ଼ିରେ ସଦସ୍ୟ ରୂପେ ଓ ରାଜ୍ୟ ସମ୍ବଳ କେନ୍ଦ୍ର, ବିଶ୍ୱ ସଂହତି ନିମନ୍ତେ କେନ୍ଦ୍ର, ରାଷ୍ଟ୍ରୀୟ ଗ୍ରାମୀଣ ବିକାଶ ନିଧି, ଗୌହାଟୀର ଉପଦେଷ୍ଟା ଏବଂ 'ଆକାଶବାଣୀର କାର୍ଯ୍ୟକ୍ରମ ଉପଦେଷ୍ଟା କମିଟି'ରେ ସଦସ୍ୟ ।
- ବର୍ତ୍ତମାନ ଓଡ଼ିଶା ରାଜ୍ୟ ସୂଚନା କମିଶନର ରୂପେ କାର୍ଯ୍ୟରତ ।
- ବିକାଶ ଲକ୍ଷ୍ୟରେ ବିଦ୍ୟାଳୟ, ମହାବିଦ୍ୟାଳୟ ଏବଂ ବେସରକାରୀ ସଂସ୍ଥା ପ୍ରତିଷ୍ଠା ନିମନ୍ତେ ତୃଣମୂଳସ୍ତରରେ ଉଦ୍ୟମ ।
- ନିରବଚ୍ଛିନ୍ନ ଉନ୍ନତି ଏବଂ ଲିଙ୍ଗଭେଦ ନ୍ୟାୟ ନିମନ୍ତେ ତୃଣମୂଳ ସ୍ତରରେ କାର୍ଯ୍ୟରତ 'ସମ୍ଭବ' ନାମକ ଅନୁଷ୍ଠାନର ପ୍ରତିଷ୍ଠାତା ।
- ସ୍ୱେଚ୍ଛାସେବୀ କ୍ଷେତ୍ର, ଜନ ଆନ୍ଦୋଳନ ଏବଂ ବିକାଶ ଦିଗରେ କାର୍ଯ୍ୟ, ଛାତ୍ରଛାତ୍ରୀଙ୍କ ଉନ୍ନତି ଏବଂ ବେସରକାରୀ ସଂସ୍ଥା ଇତ୍ୟାଦିଗୁଡ଼ିକର ସଂସ୍ଥାପନରେ ସହଯୋଗୀ ।
- ପରିବେଶ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ ନିମନ୍ତେ ୟୁ.ଏନ୍.ଇ.ପି. ଦ୍ୱାରା 'ଦି ଗ୍ଲୋବାଲ୍ ରୋଲ୍ ଅଫ୍ ଅନର' ପୁରସ୍କାର ପ୍ରାପ୍ତ ।
- ଉତ୍ସର୍ଗୀକୃତ ଜନସେବା ପାଇଁ ସର୍ବୋଚ୍ଚ ନାଗରିକ ପୁରସ୍କାର 'ଉତ୍କଳ ସେବା ସମ୍ମାନ'ରେ ରାଜ୍ୟ ସରକାରଙ୍କ ଦ୍ୱାରା ଭୂଷିତ ।
- ବିବାହିତ, ତିନୋଟି କନ୍ୟା ରତ୍ନଙ୍କର ଜନକ, ଅହିଂସା, ନିରାମିଷ, ଶାନ୍ତି, ନିରସ୍ତ୍ରୀକରଣ, ନ୍ୟାୟ, ସମାନତା ଏବଂ ପ୍ରକୃତିର ଏକତ୍ୱରେ ବିଶ୍ୱାସ ।

**ଯୋଗାଯୋଗ** - ଏଚ୍.ଆଇ.ଜି.-୨୩୮, ପାତ୍ରପଡ଼ା ପୋଷ୍ଟ, ଭୁବନେଶ୍ୱର-୧୯,

ଇ-ମେଲ : radhamohan_cwsy@yahoo.co.in



# ସ୍ୱପ୍ନଚାରୀର ମୋହମୁକ୍ତି

ପ୍ରମୋଦ କିଶୋର ପରିଡ଼ା

**ଜୀ**ବଦ୍ଦଶାରେ ବି କିମ୍ବଦନ୍ତୀ ପାଲଟିଥିବା, ପ୍ରବାଦପୁରୁଷର ସମସ୍ତ ମହିମାରେ ମହିମାମଣ୍ଡିତ ହେବାର ଦୁର୍ଲ୍ଲଭ ସୌଭାଗ୍ୟ କେବଳ ବିଜୁ ପଟ୍ଟନାୟକଙ୍କୁ ହିଁ ମିଳିଥିଲା, ଦୁର୍ବାର, ଦୁର୍ବିନୀତ, ଦୁଃସାହସୀ, ବ୍ୟକ୍ତିତ୍ୱର ସମସ୍ତ ଆକର୍ଷଣୀୟ ବୈଶିଷ୍ଟ୍ୟ ଭିତରେ ଯେ ଏକ ସଚେତନ, ସଂଗ୍ରାମୀ ଓ ଉତ୍ସର୍ଗୀକୃତ ଭାବଭୋଳା ଖିଆଲି ମଣିଷଟି ଆତଯାତ ହେଉଥିଲା - ତାହା ହିଁ ପ୍ରମାଣ ଦିଏ । ସ୍ୱପ୍ନ ଓ ବାସ୍ତବତାର ଏକ ଚଳନ୍ତି ଓ ଜୀବନ୍ତ ପୁରୁଷ ସିଂହର ଉପସ୍ଥିତିକୁ । ଗୋଟିଏ ସ୍ୱପ୍ନରେ ଆକ୍ରାନ୍ତ ହୋଇ ସେ ଖୋଜି ବୁଲୁଥିଲା ସବୁରି ଆଖିରେ ସେଇ ସ୍ୱପ୍ନର ଅଞ୍ଜନ ବୋଳି ଦେବା ପାଇଁ, ମୋ' ଦେଶ, ମୋ' ମାଟି, ମୋ' ଜାତିର ଅହଂତ୍ୱରେ ଅଙ୍ଗୀକାରବଦ୍ଧ ଜଣେ ନିଆରା ମଣିଷ । ସବୁକୁ ସମାନ କରି ଦେଖିବାର ଆଗ୍ରହ ଓ ଅଧିକାରରେ ସମର୍ଥ । ସବୁ ଥାଇ ବି ଦୁରନ୍ତ ଅଭିମାନରେ ସ୍ୱାଭିମାନରେ ତ୍ୟାଗ କରିବାର ସଂକଳ୍ପ ପୁଷ୍ଟ, କ୍ଷମତାର ବିକେନ୍ଦ୍ରୀକରଣ ମାଧ୍ୟମରେ ଗାଁ ଓ ଗ୍ରାମବାସୀଙ୍କୁ ପଞ୍ଚାୟତିରାଜ ପ୍ରଚଳନ ଦ୍ୱାରା ଅଧିକ କ୍ଷମତା ଦେବା, ନିଜ ପାଇଁ ନିଜେ ସ୍ୱର୍ଗ ତିଆରି କରିବାର ଉଚ୍ଚାଟ ଅଭିପ୍ସାରେ ପ୍ରତ୍ୟେକଙ୍କୁ ଅଭିମନ୍ତ୍ରିତ କରିବା, ସାମାଜିକ ସହାୟତା, ଧର୍ମୀୟ ସହନଶୀଳତା ଓ ସାଂପ୍ରତିକ ସଂପ୍ରୀତିବୋଧରେ ଉଦବୁଦ୍ଧ କରି ବ୍ୟକ୍ତିପ୍ରାଣକୁ ଅଧିକ ଜାତି ପ୍ରତିବଦ୍ଧ କରିବାର ଦୁର୍ବାର ଭାବନା କେବଳ ସେଭଳି ସ୍ପର୍ଦ୍ଧିତ ବ୍ୟକ୍ତିତ୍ୱ ନିକଟରେ ହିଁ ଦେଖାଯାଇଥିଲା । ସେ ଇଚ୍ଛା କରିପାରେ ପ୍ରତ୍ୟେକ ନାଗରିକ ପାଇଁ ମୁଣ୍ଡ ଗୁଞ୍ଜିବାର ଘର, ପ୍ରତ୍ୟେକ ପରିବାର ପାଇଁ ପାନୀୟ ଜଳ, ସବୁଦିନିଆ ରାସ୍ତା ଓ ସେତୁ ନିର୍ମାଣ ମାଧ୍ୟମରେ ଗମନାଗମନର ସୁବିଧା, ଗଳିଗଳିରେ ସ୍ୱାସ୍ଥ୍ୟ ସେବାର ପ୍ରକଳ୍ପ, ପ୍ରତ୍ୟେକଙ୍କ ପାଇଁ ସମୁଚିତ ଶିକ୍ଷା ବ୍ୟବସ୍ଥା, ଟେଲିଫୋନ ମାଧ୍ୟମରେ ଦ୍ରୁତ ଯୋଗାଯୋଗ ବ୍ୟବସ୍ଥା, ସେ ପୁଣି ଦେଖିପାରେ ଅତୀତ ଓଡ଼ିଶାର ଗୌରବୋଜ୍ଜ୍ୱଳ ମୁହୂର୍ତ୍ତମାନଙ୍କୁ ବର୍ତ୍ତମାନର ପୃଷ୍ଠପଟରେ ଇଚ୍ଛା କରିପାରେ ଏକ ସମୃଦ୍ଧ ସାମ୍ରାଜ୍ୟର ଅନୁକମ୍ପା ଭିକ୍ଷା ନକରି ଦାବୀ ହାସଲ ପାଇଁ ଉନ୍ମୁଖ ଯୁବକଯୁବତୀଙ୍କର ସଂଗ୍ରାମୀ ଉପସ୍ଥିତି, ପୁଣି ଇଚ୍ଛା କରିପାରେ ସୁଯୋଗ୍ୟ ଶିଳ୍ପୀ-ସୁନାମଧନ୍ୟ କାରିଗର ଓ ଭାସ୍କର, ସୁମହାନ ସଂଗୀତଜ୍ଞ ଓ କବି, ପ୍ରଚଣ୍ଡ ପ୍ରତିଭାଧାରୀ ବୈଜ୍ଞାନିକ, ଦୁଃସାହସୀ ସୈନିକର ନେତୃତ୍ୱ ନେଇ ଏ ଓଡ଼ିଆ ସମଗ୍ର ବିଶ୍ୱରେ ଅଦ୍ୱିତୀୟ ପରାକ୍ରମ ଓ ଶ୍ରୀମଣ୍ଡିତ ହୋଇ ଉତ୍କଳୀୟ ନାରୀ ଜଗତରେ ଅତୁଳନୀୟ ହୋଇ ଉଠିବାର ଇଚ୍ଛା ବି ତାଙ୍କର ଥିଲା । କୃଷିଭିତ୍ତିକ ସମାଜକୁ ଶିଳ୍ପ କ୍ଷେତ୍ରରେ ମଧ୍ୟ ନେତୃତ୍ୱ ଓ ସ୍ୱାବଲମ୍ବନଶୀଳ ହେବାର ଆଗ୍ରହ ବି ତାଙ୍କର ଥିଲା । ସେ ପୁଣି ଅତି ଦୃପ୍ତ କଣ୍ଠରେ କହିପାରୁଥିଲେ - 'ମୋ ଲୋକଙ୍କ ପାଇଁ ଭିକ ମାଗିବାକୁ ମୋତେ ଲଜ୍ଜା ନାହିଁ', ପୁଣି 'ମୋର ମୋହ ଭଙ୍ଗ ହୋଇନାହିଁ - କାରଣ ମୋର ମୋହ ନଥିଲା ।'

ଏସବୁ ଶୁଣିଲେ - କୌଣସି ରାଜନେତାର ଅହଂସର୍ବସ୍ୱ ଦୁର୍ବିନୀତ ବ୍ୟକ୍ତିତ୍ୱର ଆବରଣ ତଳେ ଗୋଟିଏ ଅତି ଉଚ୍ଛଳ ପ୍ରାଣମୟ ବ୍ୟକ୍ତିତ୍ୱକୁ ଦେଖିବାକୁ ମିଳେ ।

ସେ ମଣିଷ - ଆକାଶକୁ ଭଲ ପାଉଥିବା, ମାଟିକୁ ଭଲ ପାଉଥିବା, ପାଣିକୁ ଭଲ ପାଉଥିବା ପୁଣି ମଣିଷ ଓ ତା'ର ସକଳ ସମ୍ଭାବନାକୁ ଶ୍ରଦ୍ଧା ଓ ସମ୍ମାନ ଦେଉଥିବା ମଣିଷ - ଭୋଳା ମଣିଷ ଆଜି ଦିନରେ ଜନ୍ମ ନେଇଥିଲା । ତା'ରି ଅସଂପୂର୍ଣ୍ଣତାକୁ, ଅବଶୋଷକୁ ଦୂରକରି ତା' ସ୍ୱପ୍ନରୁ ନିଜକୁ ସାଉଁଟି ସୁଗନ୍ଧିତ ଓ ସୁଦୃଶ୍ୟ ପୁଷ୍ପହାରଟିଏ କରି ଆଜି ତାକୁ ସମର୍ପି ଦେଇ ପାରିଲେ ବୋଧହୁଏ ସବୁଠାରୁ ଯୁକ୍ତିସଂଗତ ଶ୍ରଦ୍ଧାଞ୍ଜଳି ହେବ ।

ଆସନ୍ତୁ ଆଜିର ଏ ଅବସରରେ ତା'ରି ସ୍ମୃତିଚାରଣ କରିବା ।

ପ୍ରାଧ୍ୟାପକ
ଓଡ଼ିଆ ବିଭାଗ, ବି.ଜେ.ବି. ମହାବିଦ୍ୟାଳୟ
ଭୁବନେଶ୍ୱର

# ପଞ୍ଚାୟତିରାଜ ଓ ମୋ' ସ୍ୱପ୍ନର ଭାରତବର୍ଷ



ବିଜୁ ପଟ୍ଟନାୟକ

**ଷ**ଷ୍ଠ ଦଶକରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଥିଲେ ସରପଞ୍ଚ ହେଉଛି ପଞ୍ଚାୟତିରାଜର ମୁଖ୍ୟମନ୍ତ୍ରୀ । ଗ୍ରାମାଞ୍ଚଳର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ସେ ପଞ୍ଚାୟତ ପଞ୍ଚାୟତ ଭିତରେ ଉନ୍ନୟନ କ୍ଷେତ୍ରରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିଥିଲେ । ସର୍ବୋତ୍କୃଷ୍ଟ ବିବେଚିତ ଗ୍ରାମପଞ୍ଚାୟତ ସମିତି ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଥିଲା ।

ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହେବାପରେ ଶ୍ରୀ ବିଜୁ ପଟ୍ଟନାୟକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ ସକ୍ରିୟ କରିବାକୁ ଉଦ୍ୟମ ଆରମ୍ଭ କଲେ । ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ସ୍ଥାନ ସଂରକ୍ଷଣ କରାଯିବାରୁ ୨୭ ହଜାର ମହିଳା ନିର୍ବାଚିତ ପ୍ରତିନିଧି ହେବାର ଗୌରବ ହାସଲ କଲେ । ଗ୍ରାମପଞ୍ଚାୟତରେ ସରପଞ୍ଚ ପୁରୁଷ ଥିଲେ, ମହିଳା ନାୟବ ସରପଞ୍ଚ ଏବଂ ପଞ୍ଚାୟତିରାଜ ସମିତିରେ ପୁରୁଷ ଚେୟାରମ୍ୟାନ ଥିଲେ, ମହିଳା ଭାଇସ୍ ଚେୟାରମ୍ୟାନ୍ ରହିବା ପାଇଁ ଆଇନ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ, ପୁଷ୍ଟିକର ଖାଦ୍ୟ ଯୋଗାଣ, ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ କ୍ଷେତ୍ରରେ ମହିଳା ପ୍ରତିନିଧିମାନଙ୍କୁ ଦାୟିତ୍ୱରେ ରଖିବା ପାଇଁ ସେ ନିର୍ଦ୍ଦେଶ ଦେଲେ ।

୧୯୯୩ ମାର୍ଚ୍ଚ ୫ ତାରିଖ ଦିନ ତାଙ୍କ ଜନ୍ମ ଦିନରେ ରାଜଧାନୀ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ପାଳିତ ହୋଇଥିଲା । ଏହି ସମାରୋହରେ ଓଡ଼ିଶାର ପୁରପଲ୍ଲୀରୁ ସମବେତ ହୋଇଥିବା ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ ସେ କହିଥିଲେ ଏହି ଅନୁଷ୍ଠାନଗୁଡ଼ିକୁ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ କଲେ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଜନ ସହଯୋଗ ମିଳିବା କଷ୍ଟକର ହେବ ।

ଶ୍ରୀ ପଟ୍ଟନାୟକଙ୍କର ଅଭିଭାଷଣ ନିମ୍ନରେ ପ୍ରଦତ୍ତ ହେଲା -

ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତ ସଭ୍ୟ, ସଭ୍ୟାବୃନ୍ଦ !

ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି । ମୋ' ସ୍ୱପ୍ନର ଭାରତରେ ଗଣତନ୍ତ୍ର କେଇଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହି ନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନ ସର୍ବସ୍ୱ ହେବ ନାହିଁ । ଏହା ହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ହିଁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।

୩୨ ବର୍ଷ ତଳେ ମୋତେ ଓଡ଼ିଶାର ଜନସାଧାରଣଙ୍କ ଅଭୂତପୂର୍ବ ସମର୍ଥନ ମିଳିଥିଲା । ସେତେବେଳେ ମୁଁ ଗଣତନ୍ତ୍ରରେ ଲୋକଙ୍କୁ ସଂଶ୍ଳିଷ୍ଟ କରି ରାଜ୍ୟର ପ୍ରତ୍ୟେକଟି ଗ୍ରାମକୁ ନୂଆକରି ଗଢ଼ିବାର ପ୍ରକ୍ରିୟା ଆରମ୍ଭ କରିଥିଲି । ଏଥିପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ଏବଂ ଲୋକଙ୍କ ହାତରେ କ୍ଷମତା ଓ ଦାୟିତ୍ୱ ଦେବା ପାଇଁ ଅନେକ ନୂଆ ଆଇନ ମଧ୍ୟ ତିଆରି କରାଯାଇଥିଲା । ଷଷ୍ଠ ଦଶକରେ ରାଜନୈତିକ ଝଡ଼ଝଞ୍ଜାରେ ସେହି ସ୍ୱପ୍ନକୁ ସାକାର କରିବାର କାର୍ଯ୍ୟ ଅସମାପ୍ତ ରହିଯାଇଥିଲା । ଆଜି ମୁଁ ଯେତେବେଳେ ପଛକୁ ଫେରି ଚାହୁଁଛି, ମୋତେ କିଛିଟା ହତାଶା, କିଛିଟା ବାକି ରହିଥିବା କାମ ଓ କିଛିଟା ପୂରା ହୋଇ ନଥିବା ପ୍ରତିଶ୍ରୁତି ଅସ୍ତବ୍ୟସ୍ତ କରୁଛି ।

ଆପଣମାନଙ୍କର ନାହିଁ ନଥିବା ସମର୍ଥନ ପାଇ ଦ୍ୱିତୀୟ ଥର ପାଇଁ ଆମେ ସମସ୍ତେ ଆମର ଜୟଯାତ୍ରା ଆରମ୍ଭ କରିଛୁ । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ସମ୍ପର୍କରେ ପ୍ରଚଳିତ ଆଇନଗୁଡ଼ିକୁ ସଂଶୋଧନ କରାଯାଇ ତ୍ରିସ୍ତରୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ଏକ ସମ୍ପୂର୍ଣ୍ଣ ନୂଆ ଆଇନ ପ୍ରଣୟନ କରାଯାଇଛି । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକ ପାଇଁ ନିର୍ବାଚନ ଶେଷ ହୋଇଛି । ଜିଲ୍ଲା ପରିଷଦ ପାଇଁ ଖୁବ୍ ଶୀଘ୍ର ନିର୍ବାଚନ କରାଯିବ ।

ସେ ସମୟ ଓ ଆଜି ଭିତରେ ଅନେକଟା ତଫାତ୍ ଆପଣମାନେ ଲକ୍ଷ୍ୟ କରୁଥିବେ । ଏହି ପରିବର୍ତ୍ତନର ଆହ୍ୱାନ ହେଉଛି - ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ ପ୍ରତିନିଧିମୂଳକ କରିବା, ସେଗୁଡ଼ିକୁ ଅଧିକ

କାର୍ଯ୍ୟକାଳ ଦେବା ଓ ତାଙ୍କ ପାଇଁ ଅଧିକ ସମ୍ବଳର ବ୍ୟବସ୍ଥା କରିବା, କାରଣ ଆମର ଅନୁଷ୍ଠାନଗୁଡ଼ିକ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ ହେଲେ ଉନ୍ନୟନ ଯୋଜନା କରିବା ଓ ଜନ ସହଯୋଗ ମାଧ୍ୟମରେ ସେଗୁଡ଼ିକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଇବା ମୁସ୍କିଲ ହେବ । ଏହି ପରିବର୍ତ୍ତନ ମାଧ୍ୟମରେ ଆମେ ବଡ଼ବଡ଼ କଥା ଅପେକ୍ଷା ପ୍ରକୃତ କାମ କରିପାରିବା । ଆମେ କେବଳ କାମ ହିଁ ଚାହୁଁ । ଆପଣମାନଙ୍କ ଭିତରୁ ଅନେକ ପ୍ରଶ୍ନ କରୁଛନ୍ତି - ମୋର କ୍ଷମତା କ'ଣ ? ମୋର କାମ କ'ଣ ? କୌଣସି ବ୍ୟକ୍ତିବିଶେଷକୁ କ୍ଷମତା ଦିଆଯାଏ ନାହିଁ । କ୍ଷମତା ଦିଆଯାଏ ଏକ ପ୍ରତିନିଧିମୂଳକ ବ୍ୟବସ୍ଥାକୁ । ପଞ୍ଚାୟତିରାଜ ବ୍ୟବସ୍ଥା ଏକ ପ୍ରତିନିଧିମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ୱାସ୍ଥ୍ୟ, ଶିକ୍ଷା, ସମାଜ ମଙ୍ଗଳ, ଦାରିଦ୍ର୍ୟ ଦୂରୀକରଣ, ବୃକ୍ଷରୋପଣ, ପରିବେଶ, କୃଷି, ପଶୁପାଳନ, ଜଳସେଚନ ଏବଂ ରାସ୍ତାଘାଟ ଆଦି ବିଷୟରେ ନିଷ୍ପତ୍ତି ନେବାର କ୍ଷମତା ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ଏହି ସମ୍ମିଳନୀ ଉପଲକ୍ଷେ ଆପଣମାନଙ୍କୁ ଯେଉଁ ପୁସ୍ତିକା ସବୁ ଦିଆଯାଇଛି, ସେଥିରୁ ଭଲଭାବେ ଜଣାଯିବ ଯେ, ଯୋଜନା ତିଆରି କରିବା, ତାକୁ କାର୍ଯ୍ୟକାରୀ କରିବା ଏବଂ ଏ ସମସ୍ତ କାର୍ଯ୍ୟକୁ ତଦାରଖ ଓ ତଦ୍‌ବିର କରିବାର ଦାୟିତ୍ୱ ସବୁ ଆପଣମାନଙ୍କର ।

ଆପଣମାନେ ଯଦି ଏହି କ୍ଷମତାକୁ ବିଜ୍ଞତାର ସହିତ ବ୍ୟବହାର କରନ୍ତି, ତା'ହେଲେ ପଞ୍ଚାୟତିରାଜ ବ୍ୟବସ୍ଥା ମଜଭୁତ୍ ହେବ । କ୍ଷମତା ସାଙ୍ଗକୁ ଆମେ ସମ୍ବଳ ମଧ୍ୟ ହସ୍ତାନ୍ତର କରିବୁ । ରାଜ୍ୟସ୍ତରରୁ କିଭଳି ଭାବେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବଳ ଦିଆଯାଇପାରିବ ସେ ବିଷୟରେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ୍ ଚିକିନିଖି କରି ପରୀକ୍ଷାନିରୀକ୍ଷା କରୁଛନ୍ତି । ଏହାର ସୁପାରିଶ୍‌ଗୁଡ଼ିକ ଖୁବ୍ ଶୀଘ୍ର ମିଳିଯିବ । ସମ୍ବଳକୁ ଚାହିଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ ମଧ୍ୟ ନିର୍ଦ୍ଧାରଣ କରାଯିବ ।

ଶାସନ ବ୍ୟବସ୍ଥାର ପ୍ରକୃତ ବିକେନ୍ଦ୍ରୀକରଣ ପାଇଁ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଇବା ଉପରେ ମୁଁ ସଦାବେଳେ ଜୋର୍ ଦେଇଆସିଛି । ନାରୀମାନଙ୍କର ସୃଜନଶୀଳତା ଓ ଶକ୍ତିକୁ ଉପଯୋଗ କରି ତାଙ୍କର ସ୍ୱତନ୍ତ୍ର ସମସ୍ୟାଗୁଡ଼ିକର ସମାଧାନ ପାଇଁ ଏ ଯାବତ୍ କୌଣସି ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇନାହିଁ । ସେମାନେ ଏ ପର୍ଯ୍ୟନ୍ତ ସମାଜ ଓ ଶାସନର ମୁଖ୍ୟସ୍ରୋତକୁ ଆସିପାରି ନାହାନ୍ତି । ପୁରୁଷପ୍ରଧାନ ସମାଜରେ ସେମାନଙ୍କ ସମସ୍ୟା ପ୍ରତି ଯଥାର୍ଥ ଧ୍ୟାନ ଦିଆଯାଇ ନାହିଁ । ସେମାନଙ୍କଠାରେ ଥିବା ଅନ୍ୟକୁ ପ୍ରବର୍ତ୍ତାଇବା, ସହୃଦୟତା ଓ ସମ୍ବେଦନଶୀଳତା ପ୍ରଭୃତି ଗୁଣଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ଗୁଣାତ୍ମକ ମାନ ନିଶ୍ଚିତ ଭାବେ ବୃଦ୍ଧି କରିବ । ବିଶେଷ କରି ଶିକ୍ଷା, ସ୍ୱାସ୍ଥ୍ୟ, ବୃକ୍ଷରୋପଣ, ପରିବାର କଲ୍ୟାଣ, ମା' ଓ ଶିଶୁର ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ବିକାଶଭଳି କାମଗୁଡ଼ିକ ସେମାନଙ୍କ ଉପରେ ନ୍ୟସ୍ତ କରାଯିବା ଆବଶ୍ୟକ । ମୁଁ ଚାହେଁ, ଉପରୋକ୍ତ ବିଷୟଗୁଡ଼ିକ ପାଇଁ ଯେଉଁ ଷ୍ଟାଣ୍ଡିଂ କମିଟି ରହିବ, ତା'ର ନେତୃତ୍ୱ ମହିଳାମାନେ ନିଅନ୍ତୁ । ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଯାଉ ।

ମୁଁ ଏକଥା ୧୯୬୧ରେ କହିଥିଲି, ଆଜି ମଧ୍ୟ କହୁଛି ଯେ, ଆମେ ସମାଜର ତଳ ସ୍ତରରେ ନେତା ଓ ନେତ୍ରୀ ଗଢ଼ିବା ପାଇଁ ଉଦ୍ୟମ କରୁଛୁ । ଏହା ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ଏହି ଗଣ ଆନ୍ଦୋଳନକୁ ଆମେ କିଛି ରୂପ, କିଛି ଦିଗ୍‌ଦର୍ଶନ ଏବଂ କିଛି କର୍ତ୍ତୃତ୍ୱ ଦେଉଛୁ । ସୁନ୍ଦର ଭବିଷ୍ୟତକୁ ଆଖି ଆଗରେ ରଖି ଅଧିକ ସମ୍ବେଦଶୀଳତା ଓ ଦୂରଦର୍ଶିତା ସହ ଆମକୁ ଚିନ୍ତା କରିବାକୁ ହେବ । ଆମେ ଗୋଟିଏ ନୂଆ ଶିଶୁ ଗଢୁଛୁ - ଏକ ଗଣତାନ୍ତ୍ରିକ ଶିଶୁ, ଯାହାର ଚିନ୍ତାରେ ଓ କାର୍ଯ୍ୟରେ ନେତୃତ୍ୱର ବିକାଶ ଘଟିବ । ଲୋକଙ୍କ ଭିତରେ ଯେଉଁ ସୁପ୍ତ ଶକ୍ତି ରହିଛି, ପଞ୍ଚାୟତି ବ୍ୟବସ୍ଥା ମାଧ୍ୟମରେ ତାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ ।

ଆମର ସାମୂହିକ ବିଜ୍ଞତା ଦ୍ୱାରା ଆମେ ସମୟକ୍ରମେ ଏପରି ବାଟ ବାହାର କରିବା ଯଦ୍ୱାରା ଜନସାଧାରଣଙ୍କର ବିଶ୍ୱାସ ଓ ନେତୃତ୍ୱକୁ ଆଧାର କରି ବର୍ତ୍ତମାନର ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହେଉଥିବା କାର୍ଯ୍ୟଠାରୁ ବହୁ ଅଧିକ ସଫଳତା ହାସଲ କରାଯାଇପାରିବ ।

ସବୁଠାରେ ଦୋଷ ତ୍ରୁଟି ଅଛି ଏବଂ ରହିବ । ମଣିଷର ଚରିତ୍ର ଓ ପ୍ରକୃତିକୁ ମୁଁ ଯାହା ବୁଝିଛି, ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଆମେ ଏଭଳି ଏକ ଶାସନ ଢାଞ୍ଚା ତିଆରି କରିବା ଯେଉଁଥିରେ କି ପ୍ରତ୍ୟେକ ସ୍ତ୍ରୀ, ପୁରୁଷ, ବଡ଼ ହେଉ କି ଛୋଟ ହେଉ, ଉତ୍କୃଷ୍ଟ ହେଉ କି ନିକୃଷ୍ଟ ହେଉ, ନିଜ ପ୍ରତିଭା ବିକାଶ ପାଇଁ ସୁଯୋଗ ପାଇବେ । ଚୀନ ଦାର୍ଶନିକ ତାଇ ଚୁଙ୍ଗ କହିଥିଲେ, 'ଯଦି ଆମେ କୌଣସି ଏକ କାର୍ଯ୍ୟକୁ ତ୍ରୁଟିଶୂନ୍ୟ ଭାବେ କରିବାକୁ ବସିବା, ଆମକୁ ଅନନ୍ତକାଳ ପାଇଁ ଅପେକ୍ଷା କରିବାକୁ ହେବ ।' ଆମ ହାତରେ ସମୟ ନାହିଁ । ଗଲା ତିରିଶ ବର୍ଷ ଭିତରେ ଅନେକ କିଛି ସୁଯୋଗ ଆମର ହାତଛଡ଼ା ହୋଇଯାଇଛି । ତେଣୁ ଆମକୁ ଆଜି ସଙ୍କଳ୍ପ ନେବାକୁ ହେବ-ବିଜ୍ଞତା, ଦୂରଦୃଷ୍ଟି, କରୁଣା ଓ ଉତ୍ତମ ବୁଝାମଣାକୁ ପୁଞ୍ଜି କରି ଆମେ ଆମ ନିଜର ସମସ୍ୟା ସମାଧାନର ରାସ୍ତା ବାହାର କରିବା ।



# ଭାରତର ସ୍ୱାଧୀନତା ସଂଗ୍ରାମରେ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଭୂମିକା

ତାରାକାନ୍ତ ମହାନ୍ତି



**ଭା**ରତର ସ୍ୱାଧୀନତା ସଂଗ୍ରାମ ଲୁହ ଲହୁର ଇତିହାସ, ତ୍ୟାଗର ଇତିହାସ, ସ୍ୱେଦର ଇତିହାସ, ବଳିଦାନ ବା କୁର୍ବାନୀର ଇତିହାସ, ଶୌର୍ଯ୍ୟର ଇତିହାସ । ଏଥିରେ ବୀର ପୁରୁଷମାନଙ୍କର ଭୂମିକା ବିଷୟରେ ଆଲୋକପାତ କଲେ, ଭାରତର ପ୍ରଥମ ଶହୀଦ ନବାବ୍ ସିରାଜୌଦ୍ଦୁଲାଙ୍କ କଥା ମନେ ପଡ଼େ । ମୀର୍‌ଜାଫରଙ୍କ ବିଶ୍ୱାସଘାତକତା ଲାଗି ପଲାସୀ ଯୁଦ୍ଧ ପ୍ରାନ୍ତରରେ ଲର୍ଡ଼ କ୍ଲାଇବଙ୍କ ଗୁଳିରେ ୧୭୫୭ରେ ସେ ଶହୀଦ ହେଲେ । ତା'ପରେ ଭାରତର ସ୍ୱାଧୀନତା ସଂଗ୍ରାମରେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ କେତେ ଶହୀଦ ହେଇଛନ୍ତି, ତାହାର ଇୟତ୍ତା ନାହିଁ । ଟିପୁ ସୁଲତାନ୍, ଝାନ୍‌ସିରାଣୀ ଲକ୍ଷ୍ମୀବାଈ ସମସ୍ତେ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରି ଶହୀଦ୍ ହୋଇଛନ୍ତି । ସେହି ସ୍ୱାଧୀନତା ସଂଗ୍ରାମରେ ଚନ୍ଦନ ହଜୁରୀଙ୍କ ଭୂମିକା ଅତି ମହାନ୍ ।

୧୮୦୫ରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଓ ବ୍ରିଟିଶ ସାମ୍ରାଜ୍ୟବାଦର 'Rule Britania Rule'କୁ ପ୍ରତିରୋଧ କରି ସେହି ସ୍ୱାଧୀନତା ସଂଗ୍ରାମରେ ପ୍ରଥମ ଓଡ଼ିଆ ଶହୀଦ ହୋଇଛନ୍ତି ଜୟୀ ରାଜଗୁରୁ । ସିପାହୀ ବିଦ୍ରୋହ ସଂଗଠିତ ହେବାର ଚାରିଦଶନ୍ଧି ପୂର୍ବରୁ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ବିଦ୍ୟାଧର ୧୮୧୭ ମସିହାରେ ଓଡ଼ିଶାର ପାଇକ ଆନ୍ଦୋଳନର ନେତୃତ୍ୱ ନେଇ ୧୮୨୪ ମସିହାରେ ଶହୀଦ ହୋଇଥିଲେ । ତା'ପରେ ଘୁମୁସରର ଚକ୍ର ବିଷୋୟୀ, ଦୋରା ବିଷୋୟୀ ପ୍ରଭୃତି ସ୍ୱାଧୀନତା ସଂଗ୍ରାମରେ ଶହୀଦ ହୋଇଛନ୍ତି । ବାଲେଶ୍ୱରର ବାଘା ଯତୀନ ମଧ ଚଷାଖଣ୍ଡ ଯୁଦ୍ଧରେ ଶହୀଦ ହୋଇଛନ୍ତି । ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ଯିଏ ସ୍ୱାଧୀନତା ସଂଗ୍ରାମର ବହ୍ନିକୁ ୧୮୬୩ ମସିହା ପର୍ଯ୍ୟନ୍ତ ପ୍ରଜ୍ୱଳିତ କରି ରଖିଥିଲେ ଏବଂ ୧୮୬୩ ମସିହାରେ ମଧ୍ୟପ୍ରଦେଶର ଅସିରଗଡ଼ ଦୁର୍ଗରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସମ୍ବଲପୁରର ଘେଁସ ଜମିଦାର ପରିବାରର ସ୍ୱାଧୀନତା ସଂଗ୍ରାମକୁ ଉକ୍ତ ପରିବାରର ମାଧୋସିଂହଙ୍କ ଅବଦାନ କୌଣସି ଗୁଣରେ ନ୍ୟୁନ ନୁହେଁ । ସୁନ୍ଦରଗଡ଼ର ବିର୍ସାମୁଣ୍ଡାଙ୍କ ସ୍ୱାଧୀନତା ସଂଗ୍ରାମରେ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ । କୋରାପୁଟର ଲକ୍ଷ୍ମଣ ନାୟକ ବ୍ରିଟିଶ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଶହୀଦ ହୋଇଥିଲେ । ଢେଙ୍କାନାଳ ଜିଲ୍ଲା ନୀଳକଣ୍ଠପୁର ଗ୍ରାମର ୧୬ ବର୍ଷର ବାଳକ ବାଜି ରାଉତ ଯେକି ଡଙ୍ଗାରେ ଯାତ୍ରୀ ପାରି କରୁଥିଲା, ତା'ର ଅଦମ୍ୟ ସାହସ ଓ ଦେଶଭକ୍ତିର ନିଦର୍ଶନ ବିରଳ । ଗୋରା ସିପାହୀମାନଙ୍କୁ ନଦୀପାର କରାଇ ଦେଇନଥିଲା ଏବଂ ସେମାନଙ୍କର ଧମକରେ ବିଚଳିତ ନହୋଇ ଡଙ୍ଗା ଖୋଲି ନଥିଲା ଏବଂ ବ୍ରିଟିଶ ଫୌଜଙ୍କ ଗୁଳିରେ ଶହୀଦ ହୋଇଥିଲା । ପଦ୍ମଶ୍ରୀ ସଚ୍ଚି ରାଉତରାୟ ସେଥିପାଇଁ ଏକ କ୍ଷୁଦ୍ର କବିତାରେ ଲେଖିଛନ୍ତି -

'ନୁହେଁ ବନ୍ଧୁ, ନୁହେଁ ଏହି ଚିତା
ଏ ଜାତି ତିମିର ତଳେ ଅଳିଭା ମୁକତି ସଳିତା ।'

ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କର ସମସାମୟିକ ଓ ତାହାର କିଛି ବର୍ଷ ପୂର୍ବରୁ ଉତ୍କଳମଣି ଗୋପବନ୍ଧୁ, ଡଃ ହରେକୃଷ୍ଣ ମହତାବ୍, ପୂଜ୍ୟ ନବକୃଷ୍ଣ ଚୌଧୁରୀ, ପୂଜ୍ୟା ମାଳତୀ ଦେବୀ ଓ ଗୋପବନ୍ଧୁ ଚୌଧୁରୀ ଆମର ଚିର ବନ୍ଦ୍ୟ, ଚିର ସ୍ମରଣୀୟ ଓ ଓଡ଼ିଆଜାତି ତାଙ୍କୁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କୁ ସମସ୍ତେ ନବ ଓଡ଼ିଶାର ନିର୍ମାତା ଭାବେ ଜାଣନ୍ତି, ମାତ୍ର ତାଙ୍କର ସ୍ୱାଧୀନତା ସଂଗ୍ରାମରେ ଝାସ ଓ ଯୋଗଦାନ ସମ୍ପର୍କରେ ଏବଂ ସେଥିରେ ନିର୍ଣ୍ଣାୟକ ଓ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଜନସାଧାରଣ କମ୍ ଜାଣନ୍ତି । ସେଥିପାଇଁ ତାଙ୍କର ସ୍ୱାଧୀନତା ସଂଗ୍ରାମରେ ଯେଉଁ କେତେକ ଉଲ୍ଲେଖନୀୟ ଦୃଷ୍ଟାନ୍ତ ରହିଛି,

ସେ ସମ୍ପର୍କରେ ନିମ୍ନରେ ଅବତାରଣା କରାଗଲା । ଏକ ସମ୍ଭ୍ରାନ୍ତ, ସଂସ୍କୃତି ସମ୍ପନ୍ନ, ସ୍ୱାଧୀନତା ସଂଗ୍ରାମୀ ପରିବାରରେ ବିଜୁବାବୁ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକର ତୁଳସୀପୁରସ୍ଥିତ ଆନନ୍ଦ ଭବନଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତାଙ୍କ ନାମ ଆଶାଲତା ଦେବୀ । ପିତାମାତାଙ୍କ ନିକଟରୁ ସେ ନିର୍ଭୀକତାର ଶିକ୍ଷା ଓ ଦୁଃସାହସିକତାର ଦୀକ୍ଷା ଗ୍ରହଣ କରିଥିଲେ । ମହାନ୍ ସ୍ୱପ୍ନ, ଦୃଢ଼ ସଂକଳ୍ପ ଓ କଠୋର ସାଧନା ତାଙ୍କ ଜୀବନର ସବୁ କ୍ଷେତ୍ରରେ ସଫଳତାର ଶିଖରରେ ପହଞ୍ଚାଇ ପାରିଥିଲା । ତାଙ୍କର ଜୀବନ ଯେତିକି ଘଟଣା ବହୁଳ, ସେତିକି ରୋମାଞ୍ଚକର । ବାଲ୍ୟକାଳରୁ ତାଙ୍କ ମନରେ ଜନସେବା ଓ ଦେଶଭକ୍ତିର ଭାବନା ଜାଗରିତ ହୋଇଥିଲା । ୧୯୨୬ ମସିହାରେ ତାଙ୍କୁ ୧୦ ବର୍ଷ ବୟସ ହୋଇଥିବା ସମୟରେ ସ୍ୱରାଜ ଆଶ୍ରମରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ପାଇଁ ଲୋକ ଗହଳି ଭିତରେ ଠେଲି ପଶିବା ବେଳେ ପୋଲିସ୍ ଲାଠି ମାଡ଼ରେ ତାଙ୍କର ମୁଣ୍ଡ ଫାଟି ଯାଇଥିଲା । ମୁଣ୍ଡରୁ ରକ୍ତ ପୋଛି ଗାନ୍ଧିଜୀଙ୍କ ସାମ୍ନାରେ ସେଦିନ ସେ ଶପଥ ନେଇଥିଲେ, ଗୋରା ପୋଲିସ୍‌ର ଏ ଜୁଲମ୍‌ର ଦିନେ ସେ ପ୍ରତିଶୋଧ ନେବେ । ମିଶନ୍ ସ୍କୁଲ୍‌ରେ ପଢୁଥିବା ବେଳେ ଜଣେ ୟୁରୋପୀୟ ସର୍ଜେଣ୍ଟ ତାଙ୍କୁ ମାଡ଼ ଦେଇଥିଲେ । ଘରକୁ ଫେରିବା ପରେ ବାପା ପଚାରିଲେ, ‘ନିଜର ମୁଣ୍ଡଟା ଫଟାଇ ଆସିଲୁ, ସର୍ଜେଣ୍ଟର ମୁଣ୍ଡ ଫଟାଇ ପାରିଲୁ ନାହିଁ ?’ ଏ ଘଟଣାର ମାସକ ପରେ ବାରବାଟୀ କିଲ୍ଲାଠାରେ ହକି ଖେଳିଲାବେଳେ ବିଜୁବାବୁ ସେହି ସର୍ଜେଣ୍ଟର ଗୋଡ଼କୁ ହକି ଷ୍ଟିକ୍‌ରେ ଆଘାତ କରି ଭାଙ୍ଗି ଦେଇଥିଲେ । ବି.ଏସ୍.ସି. ପଢୁଥିବା ସମୟରେ ସେ ବୈମାନିକ ହେବାର ସ୍ୱପ୍ନ ଦେଖୁଥିଲେ ଏବଂ ପାଇଲଟ୍ ଟ୍ରେନିଂ ନେଇ ରୟାଲ୍ ଇଣ୍ଡିଆ ଏୟାର୍ ଫୋର୍ସ ଓ ଇଣ୍ଡିଆନ୍ ନ୍ୟାସ୍‌ନାଲ ଏୟାରଓ୍ୱେଜ୍‌ରେ ଭର୍ତ୍ତି ହୋଇଥିଲେ । ପରବର୍ତ୍ତୀ ଜୀବନରେ ଜଣେ ସାହସୀ ଓ ସୁଦକ୍ଷ ପାଇଲଟ୍ ଭାବରେ ସେ ବହୁ ଅସାଧ କାର୍ଯ୍ୟ ସମ୍ପନ୍ନ କରି ଖ୍ୟାତି ଅର୍ଜନ କରିଥିଲେ । ଭାରତର ବଡ଼ଲାଟ୍ ଲର୍ଡ଼ ଓ୍ୱାଭେଲ୍‌ଙ୍କର ସେ ପାଇଲଟ୍ ଥିଲେ । ବଡ଼ଲାଟ୍‌ଙ୍କ ଗୁପ୍ତ ଦଲିଲ ସବୁ ସେ ଗୋପନରେ ଗାନ୍ଧିଜୀଙ୍କୁ ଯୋଗାଇ ଦେଉଥିଲେ । ୧୯୪୦ ମସିହାରେ ଜୟ ପ୍ରକାଶ ନାରାୟଣଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା ଏବଂ ବିଜୁବାବୁ ତାଙ୍କୁ ନିଜର ପ୍ରଥମ ରାଜନୈତିକ ଗୁରୁ ରୂପେ ଗ୍ରହଣ କରି ନେଇଥିଲେ । ସେହି ବର୍ଷ ସେ ପାଇଲଟ୍ ଚାକିରି ଛାଡ଼ି ଜାତୀୟ ନେତାମାନଙ୍କ ସଂସ୍ପର୍ଶରେ ଆସିଥିଲେ । ଭାରତଛାଡ଼ ଆନ୍ଦୋଳନରୁ ତାଙ୍କର ରାଜନୈତିକ ଜୀବନର ଅୟମାରମ୍ଭ ହୋଇଥିଲା । ୧୯୪୩ ମସିହାରେ ସେ ଦିଲ୍ଲୀରେ ଗିରଫ ହୋଇ ଲାଲକିଲ୍ଲାରେ ବନ୍ଦୀ ହୋଇ ରହିଥିଲେ ।

ତତ୍କାଳୀନ ଲାଟ୍ ଚାନ୍ଦୁଲାଲ୍ ତ୍ରିବେଦୀ ତାଙ୍କୁ ପିଇବାକୁ ପାଣି ନଦେଇ ହାତକୁ ପରିଶ୍ରା ବୋତଲ ଧରାଇ ଦେଲେ । ବିଜୁବାବୁ ସେହି ବୋତଲକୁ ଲାଟ୍‌ଙ୍କ ଉପରକୁ ଫିଙ୍ଗି ଦେଇଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନ, ବର୍ମା ଆକ୍ରମଣ କଲାବେଳେ ବିଜୁବାବୁ ନିଜ ଜୀବନ ବିପନ୍ନ କରି ବ୍ରିଟିଶ୍ ପରିବାରକୁ ମୃତ୍ୟୁମୁଖରୁ ଉଦ୍ଧାର କରିଥିଲେ । ହିମାଳୟ ଉପରେ ବିମାନ ନେଇ ସେ ଚୀନ୍‌ର ବିପ୍ଳବୀମାନଙ୍କୁ ସାହାଯ୍ୟ କରିଥିଲେ । ଭାରତଛାଡ଼ ଆନ୍ଦୋଳନ କାଳରେ ସେ ଜୟପ୍ରକାଶ ନାରାୟଣ, ଅରୁଣା ଆସଫ୍ ଅଲ୍ଲୀ, ରାମମନୋହର ଲୋହିଆ ଓ ଅଚ୍ୟୁତ୍ ପଟବର୍ଦ୍ଧନ ଆଦି ଜାତୀୟ ନେତାମାନଙ୍କୁ ନିଜ ଘରେ ଲୁଚାଇ ରଖିଥିଲେ । ଗୋପନରେ ନେତାଜୀଙ୍କ ପ୍ରଚାରପତ୍ର ବିମାନରୁ ବିତରଣ କରିଥିଲେ । ୧୯୪୭ରେ ଡଚ୍-ଇଣ୍ଡୋନେସିଆ ଯୁଦ୍ଧ ଚାଲିଥିବା ବେଳେ ବିଜୁବାବୁ ପଣ୍ଡିତ ନେହେରୁଙ୍କ ନିର୍ଦ୍ଦେଶକ୍ରମେ ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ସୁଲତାନ୍ ସାହରିୟାର୍, ମହମ୍ମଦ ହଟ୍ଟା ଏବଂ ଅନ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିମାନରେ ଜାକର୍ତ୍ତାରୁ ରେଙ୍ଗୁନ୍ ବାଟ ଦେଇ ଦିଲ୍ଲୀକୁ ନେଇ ଆସିଥିଲେ । ସେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କର ଜୀବନ ରକ୍ଷା ମଧ କରିଥିଲେ । ତାଙ୍କର ଏହି ଅପୂର୍ବ ସାହସ ଓ ବୀରତ୍ୱ ପାଇଁ ଇଣ୍ଡୋନେସିଆ ସରକାର ତାଙ୍କୁ ସେ ଦେଶର ସର୍ବୋଚ୍ଚ ସମ୍ମାନ ‘ଭୂମିପୁତ୍ର’ ଉପାଧିରେ ଭୂଷିତ କରିଥିଲେ । ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ସହଯୋଗ ପାଇଁ କୃତଜ୍ଞତା ସ୍ୱରୂପ ୧୯୫୦ରେ ତାଙ୍କୁ ଇଣ୍ଡୋନେସିଆ ସରକାର ୫୦୦ କୋଟି ଟଙ୍କା ଆର୍ଥିକ ପୁରସ୍କାର ପ୍ରଦାନ କରିଥିଲେ । କିନ୍ତୁ ବିଜୁବାବୁ ସେହି ଅର୍ଥରାଶିକୁ ଇଣ୍ଡୋନେସିଆବାସୀଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ଦାନକରି ନିଜର ମହାନୁଭବତା ପ୍ରଦର୍ଶନ କରିଥିଲେ । ଏହି ମହାନ୍ ଜନନାୟକଙ୍କର ୧୯୯୭ ମସିହା ଅପ୍ରେଲ୍ ମାସ ୧୭ ତାରିଖ ଦିନ ଦେହାବସାନ ଘଟିଥିଲା ।

‘ଡରଭୟ ନାହିଁ ବୀରର ଜାତକେ, ନମରେ ସେ କେବେ ପରାଣ ଆତଙ୍କେ’ । ବିଜୁବାବୁଙ୍କର ଆଠ ଦଶନ୍ଧିର ଜୀବନକାଳ ଏକ ସମର୍ପିତ, ଉତ୍ସର୍ଗୀକୃତ ଜୀବନ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ, ‘ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ, କର୍ମେ ଜୀଏଁ ନର କର୍ମ ଏକା ତା’ର ଜୀବନର ମାନଦଣ୍ଡ ।’

ଏହା ହିଁ କେବଳ ବିଜୁବାବୁଙ୍କ କ୍ଷେତ୍ରରେ ପ୍ରଜୁଯ୍ୟ । ତାଙ୍କର କର୍ମ ତାଙ୍କୁ ଅମର କରି ରଖିଛି । ମୋ’ ସ୍ୱପ୍ନର ଓଡ଼ିଶା ପାଇଁ ନିମ୍ନଲିଖିତ କୋଡ଼ିଏଟି କାମ ତାଙ୍କୁ ସବୁଦିନ ପାଇଁ ଅମର କରି ରଖିବ ।

ନବ ଓଡ଼ିଶା ନିର୍ମାଣରେ ତାଙ୍କର ଗଠନମୂଳକ ଭୂମିକା ସମ୍ପର୍କରେ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦାନ କରାଗଲା ।

୧୯୫୦ ମସିହାରେ କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ବିଜ୍ଞାନକୁ ଜନପ୍ରିୟ କରିବା ପାଇଁ ଇଉଏନେସ୍କୋ (UNESCO) ମାଧ୍ୟମରେ ବିଶ୍ୱର ଲୋକପ୍ରିୟ ବୈଜ୍ଞାନିକଙ୍କୁ ପ୍ରତିବର୍ଷ ଆନ୍ତର୍ଜାତିକ କଳିଙ୍ଗ ପୁରସ୍କାର ପ୍ରଦାନ, ପାରାଦୀପ ବନ୍ଦର ନିର୍ମାଣ, ସୁନାବେଡ଼ାଠାରେ ମିଗ୍ କାରଖାନା ପ୍ରତିଷ୍ଠା, ଥେରୁଭାଲ୍ଲିଠାରେ ଫେରୋସିଲିକନ୍ କମ୍ପ୍ଳେକ୍ସର ପ୍ରତିଷ୍ଠା, ବାଲିମେଳାଠାରେ ଜଳବିଦ୍ୟୁତ୍ ପାଓ୍ୱାର ପ୍ରୋଜେକ୍ଟ ପ୍ରତିଷ୍ଠା, ପାରାଦୀପକୁ ଦଇତାରି ସହିତ ସଂଯୋଗ କରି ହାଇଓ୍ୱେ ଏକ୍ସପ୍ରେସ୍

ବା ତ୍ୱରିତ ରାଜପଥର ନିର୍ମାଣ, ଭୁବନେଶ୍ୱରରେ ସୈନିକ ସ୍କୁଲ୍ ପ୍ରତିଷ୍ଠା, ତାଳଚେରଠାରେ ଥର୍ମାଲ୍ ଶକ୍ତି ଷ୍ଟେସନ୍ ପ୍ରତିଷ୍ଠା, ବୁର୍ଲାଠାରେ ଇଞ୍ଜିନିୟରିଂ ଓ ମେଡିକାଲ୍ କଲେଜ ପ୍ରତିଷ୍ଠା, ରାଉରକେଲାଠାରେ ଇଞ୍ଜିନିୟରିଂ କଲେଜ ପ୍ରତିଷ୍ଠା, ଭୁବନେଶ୍ୱରର ଡି.ଏମ୍. ସ୍କୁଲ ଓ ରେଜିଓନାଲ୍ କଲେଜ ଅଫ୍ ଏଜୁକେସନ୍ ପ୍ରତିଷ୍ଠା, ଭୁବନେଶ୍ୱରରେ ରେଜିଓନାଲ୍ ରିସର୍ଚ୍ଚ ଲାବ୍ରୋଟୋରୀ ପ୍ରତିଷ୍ଠା ଯାହା କାଉନ୍ସିଲ୍‌ଅଫ୍ ସାଇଣ୍ଟିଫିକ୍ ଆଣ୍ଡ୍ ଇଣ୍ଡଷ୍ଟ୍ରିଆଲ୍ ରିସର୍ଚ୍ଚର ଅଂଶବିଶେଷ, ଭୁବନେଶ୍ୱରଠାରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, କଟକ-ଜଗତପୁରକୁ ସଂଯୋଗ କରୁଥିବା ମହାନଦୀ ହାଇୱେ ସେତୁ, ଭୁବନେଶ୍ୱର ବିମାନ ବନ୍ଦର ନିର୍ମାଣ, ଓଡ଼ିଶା ଆଭିଏସନ୍ କେନ୍ଦ୍ର ଭୁବନେଶ୍ୱରରେ ପ୍ରତିଷ୍ଠା, ପଞ୍ଚାୟତିସ୍ତରୀୟ ଶିଳ୍ପ ପ୍ରକଳ୍ପ ପ୍ରତିଷ୍ଠା, ଓଡ଼ିଶା ରାଜ୍ୟ ଯୋଜନାବୋର୍ଡ଼ ଗଠନ, ଜିଲ୍ଲାଗୁଡ଼ିକର ପୁନର୍ଗଠନ କେବଳ ପ୍ରଶାସନକୁ ଜନସାଧାରଣଙ୍କର ନିକଟତର କରିବା ପାଇଁ ଜିଲ୍ଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି, କଟକ ଭୁବନେଶ୍ୱର ରାସ୍ତା ୪ ଲେନ୍ ବିଶିଷ୍ଟ ପ୍ରଶସ୍ତିକରଣ, ନିଯୁକ୍ତି କ୍ଷେତ୍ରରେ ମହିଳାମାନଙ୍କ ପାଇଁ ୩୦ ପ୍ରତିଶତ ସ୍ଥାନ ସଂରକ୍ଷଣ । ତାଙ୍କର ଏସବୁ କାର୍ଯ୍ୟକୁ ଓଡ଼ିଶାବାସୀ ଚିରଦିନ ମନେ ରଖିବେ ।

ଉପନିର୍ଦ୍ଦେଶକ (ପ୍ରିଣ୍ଟ ମିଡିଆ ଓ ବିଜ୍ଞାପନ)
ତଥା ଉପଶାସନ ସଚିବ, ଲୋକ ସଂପର୍କ ଭବନ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର



ସୂଚନା ଓ ଲୋକ ସଂପର୍କ ବିଭାଗ, କୋଲକତା ଶାଖା ତରଫରୁ ସାଧାରଣତନ୍ତ୍ର ଦିବସ-୨୦୦୬ ପାଳନ ଅବସରରେ କୋଲକତାସ୍ଥିତ ଓଡ଼ିଆ ହାଇସ୍କୁଲ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ହୋଇଥିବା ବକ୍ତୃତା ପ୍ରତିଯୋଗିତାର କୃତୀ ପ୍ରତିଯୋଗୀ କୁମାରୀ ସୁଶ୍ରୀ ସ୍ମିତା ସାମଲ ମୁଖ୍ୟ ଅତିଥି ଶ୍ରୀ ରଞ୍ଜନ କୁମାର ରାଉତରାୟ ଅତିରିକ୍ତ କମିଶନର, କେନ୍ଦ୍ର ଅବକାରୀ ବିଭାଗଙ୍କଠାରୁ ପୁରସ୍କାର ଓ ପ୍ରମାଣପତ୍ର ଗ୍ରହଣ କରୁଛନ୍ତି । ନିକଟରେ ଶ୍ରୀ ଶରତଚନ୍ଦ୍ର ତ୍ରିପାଠୀ, ସୂଚନା ଅଧିକାରୀ ଉପସ୍ଥିତ ଅଛନ୍ତି ।

# ଓଡ଼ିଶାରେ ପଞ୍ଚାୟତିରାଜ

ବସନ୍ତ କୁମାର ଦେବ

୧୯୬୧ ମସିହା ଜାନୁଆରୀ-୨୬ ତାରିଖ ସାଧାରଣତନ୍ତ୍ର ଦିବସଠାରୁ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ଏହାର କିଛିଦିନ ପରେ ବିଜୁ ପଟ୍ଟନାୟକ ଓଡ଼ିଶାର ଯୁବ ମୁଖ୍ୟମନ୍ତ୍ରୀ ଭାବେ ଓଡ଼ିଶାର ଶାସନ ଡୋରୀ ହାତକୁ ନେଇଥିଲେ । ଭାରତବର୍ଷରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ଜନ୍ମଦାତା ଥିଲେ ଗୁଜୁରାଟର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବଳବନ୍ତ ରାୟ ମେହେଟ୍ଟା । ବଳବନ୍ତ ରାୟ କମିଟି ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ କ୍ଷମତାର ବିକେନ୍ଦ୍ରୀକରଣ ପାଇଁ ସୁପାରିଶ କରିଥିଲେ ଏବଂ ତାହା ବିଜୁ ପଟ୍ଟନାୟକଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ ପ୍ରଥମେ ଆରମ୍ଭ କରାଯାଇଥିଲା । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ 'କାମରାଜ ଯୋଜନା'ରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ପରିତ୍ୟାଗ କରିଥିଲେ । ସେ ସ୍ୱଳ୍ପ ସମୟ ପାଇଁ ଶାସନ କ୍ଷମତାରେ ରହି ତ୍ରିସ୍ତରୀୟ ପଞ୍ଚାୟତିରାଜ କ୍ଷେତ୍ରରେ ଓଡ଼ିଶା ପାଇଁ ଉଲ୍ଲେଖନୀୟ କାର୍ଯ୍ୟ କରିଯାଇଛନ୍ତି ।

ପଞ୍ଚାୟତିରାଜ ସଂସ୍ଥାଗୁଡ଼ିକ ଯେପରି ସୁଦୃଢ଼, କ୍ରିୟାଶୀଳ ଓ ଆତ୍ମନିର୍ଭରଶୀଳ ହୋଇପାରିବ, ସେଥିପାଇଁ ବିଜୁବାବୁ 'ପଞ୍ଚାୟତ ଶିଳ୍ପ'ର ପ୍ରବର୍ତ୍ତନ କରିଥିଲେ । ସେତେବେଳେ ଓଡ଼ିଶାରେ ପଞ୍ଚାୟତିରାଜ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇ ସମୁଦାୟ ୩୧୪ଟି ପଞ୍ଚାୟତ ସମିତି ଗଠନ କରାଯାଇଥିଲା । ଏଥିପାଇଁ ୩୧୪ ଜଣ ବି.ଡି.ଓ ଏବଂ ବିଜୁବାବୁଙ୍କ ଦ୍ୱାରା ପ୍ରବର୍ତ୍ତିତ ପଞ୍ଚାୟତ ଶିଳ୍ପ ସଂସ୍ଥା ପାଇଁ ପଞ୍ଚାୟତ ଶିଳ୍ପ ଅଧିକାରୀଙ୍କ ନିଯୁକ୍ତି ଆବଶ୍ୟକ ପଡ଼ିବାରୁ ତାଙ୍କର ନିର୍ଦ୍ଦେଶକ୍ରମେ ପ୍ରାୟ ଦେଢ଼ଶହ ଡେପୁଟି, ସବ୍-ଡେପୁଟି ପ୍ରତିଯୋଗିତାମୂଳକ ପରୀକ୍ଷାରେ ମନୋନୀତ ହୋଇ ନିଯୁକ୍ତି ପାଇଥିଲେ ।

ଯେଉଁମାନଙ୍କର ଅର୍ଥଶାସ୍ତ୍ର ଏବଂ ବାଣିଜ୍ୟରେ ସ୍ନାତକ ବା ସ୍ନାତକୋତ୍ତର ଡିଗ୍ରୀ ଥିଲା, ସେମାନେ ପଞ୍ଚାୟତ ଶିଳ୍ପ ଅଧିକାରୀ ଭାବେ ଏବଂ ଅନ୍ୟମାନେ ବି.ଡି.ଓ ପାଇଁ ନିଯୁକ୍ତି ପାଇଥିଲେ ।

ବିଜୁବାବୁଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ କାଳରେ ପ୍ରଚଳିତ ପଞ୍ଚାୟତିରାଜ ଓ ପଞ୍ଚାୟତ ଶିଳ୍ପ କିଛିବର୍ଷ କାର୍ଯ୍ୟ କଳାପରେ ତାହା



ସ୍ଥାଣୁ ଅବସ୍ଥାରେ ପରିଣତ ହୋଇଥିଲା । ୧୯୬୭ ମସିହାରେ ସ୍ୱତନ୍ତ୍ର ଓ ଜନ କଂଗ୍ରେସ ଦଳ ଏକତ୍ର ହୋଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ କଲେ । ଏହି ଦଳ କ୍ଷମତାକୁ ଆସିବା ପରେ ଜିଲ୍ଲା ପରିଷଦକୁ ଉଠାଇ ଦେଇଥିଲେ । କେବଳ ଗ୍ରାମପଞ୍ଚାୟତ ଏବଂ ପଞ୍ଚାୟତ ସମିତି ଦ୍ୱିସ୍ତରୀୟ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇଥିଲା । ପଞ୍ଚାୟତ ଶିଳ୍ପ କ୍ରମଶଃ ବନ୍ଦ ହୋଇଗଲା । ଛତ୍ରପୁର, ଫୁଲବାଣୀ ଆଦି ସ୍ଥାନରେ କେତୋଟି କାଷ୍ଠଶିଳ୍ପ ଶାଖା ଜରାଜୀର୍ଣ୍ଣ ଅବସ୍ଥାରେ ଦେଖିବାକୁ ମିଳେ । ସମ୍ବଲପୁରର ଅତାବିରାଠାରେ ଚିନିକଳ ଏବଂ ମୟୂରଭଞ୍ଜର ବାସିପିଠାଠାରେ କ୍ଷୁଦ୍ର ଲୁହା ସାମଗ୍ରୀ କାରଖାନା ପଞ୍ଚାୟତ ଶିଳ୍ପ ଭାବେ ସ୍ଥାପିତ ହୋଇଥିଲା । ଏହାଛଡ଼ା ଟାଇଲ ଶିଳ୍ପ ମଧ୍ୟ ଏହାର ଅନ୍ତର୍ଭୁକ୍ତ । ବର୍ତ୍ତମାନ ସେସବୁ

ଲୁପ୍ତ ପ୍ରାୟ । କିନ୍ତୁ ତ୍ରିସ୍ତରୀୟ ପଞ୍ଚାୟତିରାଜ'ର ଜନକ ଗୁଜୁରାଟର ମୁଖ୍ୟମନ୍ତ୍ରୀ ବଳବନ୍ତ ରାୟ ମେହେଟ୍ଟା ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନାମ ଭାରତରେ ପଞ୍ଚାୟତ ଶିଳ୍ପର ଜନ୍ମଦାତା ହିସାବରେ ଇତିହାସର ପୃଷ୍ଠା ମଣ୍ଡନ କରୁଛି ।

୧୯୯୦ରୁ ୧୯୯୫ ମଧ୍ୟରେ ବିଜୁବାବୁଙ୍କ ଶେଷ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଓଡ଼ିଶାରେ 'ତ୍ରିସ୍ତରୀୟ ପଞ୍ଚାୟତିରାଜ' ପ୍ରବର୍ତ୍ତନ କରିବା ପାଇଁ ଆଇନ ପ୍ରଣୟନ କରିଥିଲେ । ସର୍ବୋଚ୍ଚସ୍ତର ଜିଲ୍ଲା ପରିଷଦ ପୁଣି ପ୍ରବର୍ତ୍ତନ ହେଲା । ଏଥର ବିଜୁବାବୁ ପଞ୍ଚାୟତିରାଜ ବ୍ୟବସ୍ଥାରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ଆଦିବାସୀ, ହରିଜନମାନଙ୍କ ସଂରକ୍ଷଣ ବ୍ୟବସ୍ଥା ସହିତ ମହିଳାମାନଙ୍କ ନିମନ୍ତେ ୩୩ ଭାଗ ସ୍ଥାନ ସଂରକ୍ଷଣ ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଏବଂ ଜିଲ୍ଲା ପରିଷଦ ଆଇନରେ ବ୍ୟବସ୍ଥା ପ୍ରଚଳନ କଲେ । କେଉଁ ୱାର୍ଡ଼, ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଏବଂ ଜିଲ୍ଲା ପରିଷଦ, ମହିଳା, ଆଦିବାସୀ, ହରିଜନମାନଙ୍କ ପାଇଁ ସଂରକ୍ଷିତ ହେବ, ତାହାର ବ୍ୟବସ୍ଥା ଆଇନରେ ରହିଲା । ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରବର୍ତ୍ତିତ ସଂରକ୍ଷଣ ବ୍ୟବସ୍ଥା ଫଳରେ ଆଦିବାସୀ/ହରିଜନ ଓ ମହିଳାମାନେ କ୍ଷମତା ବିକେନ୍ଦ୍ରୀକରଣରେ ସକ୍ରିୟ ଭୂମିକା ଗ୍ରହଣ କରିବାର ସୁଯୋଗ ପାଇଲେ ।

ବିଜୁ ପଟ୍ଟନାୟକ ମାତୃଜାତିକୁ ସମ୍ମାନ ଦେବାକୁ ଗୁରୁତ୍ୱ ଦେଉଥିଲେ । ସେ କହୁଥିଲେ 'ମା'କୁ ସମ୍ମାନ', ଗାଁକୁ କାମ । କାରଣ ଯେପର୍ଯ୍ୟନ୍ତ ଗ୍ରାମାଞ୍ଚଳଗୁଡ଼ିକର ଉନ୍ନତି ନ ହୋଇଛି, ସେ ପର୍ଯ୍ୟନ୍ତ ଦେଶର ଉନ୍ନତି ହେବ ନାହିଁ ବୋଲି ସେ ଉପଲବ୍ଧି କରିଥିଲେ । କଳିଙ୍ଗ ମା' ପାଇଁ ନିଜ ଜୀବନ ବିନିମୟରେ ଯଦି କିଛି କରିପାରିଲି, ତାହା ହିଁ ମୋ' ଜୀବନର ଏକମାତ୍ର ବ୍ରତ ହେବ ବୋଲି ସେ ଅନୁଭବ କରୁଥିଲେ ।

ଏହି ମହାନ୍ ଜନନାୟକ, କଳିଙ୍ଗ ବୀର, ଭୂମିପୁତ୍ର, ପଞ୍ଚାୟତସ୍ତରୀୟ ଶିଳ୍ପର ଜନ୍ମଦାତା ବିଜୁ ପଟ୍ଟନାୟକଙ୍କୁ ତାଙ୍କର ଜନ୍ମଦିନ ମାର୍ଚ୍ଚ ୫ ତାରିଖରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ।

କ୍ୱାଟର ନଂ- ଇ-୭୫, ୟୁନିଟ୍-୮
ଭୁବନେଶ୍ୱର-୧୨

---

# ପ୍ରବାଦ ପୁରୁଷ ହେ ବିଜୁ ପଟ୍ଟନାୟକ

ପୂର୍ଣ୍ଣ ମହାନ୍ତି

ପ୍ରବାଦ ପୁରୁଷ ହେ ବିଜୁ ପଟ୍ଟନାୟକ
ଓଡ଼ିଶାର ଜନମାନସରେ ସପନ ମଣିଷ
ଅଭିଶପ୍ତ ପଛୁଆ ଜାତିର ଭଗୀରଥ ତୁମେ
ଗଙ୍ଗାର ବାହକ ।
ତୁମ ପାଇଁ ଗର୍ବ କରେ ଆଜି ଏ 'କଟକ'
ପ୍ରବାଦ ପୁରୁଷ ହେ ବିଜୁ ପଟ୍ଟନାୟକ ।
ଜୀବନ ସଂଗ୍ରାମେ ବୀର କେତେ ଯେ ଲଢ଼ିଛ
ଆମ ପାଇଁ ରଖିଗଲ 'ଭୂମିପୁତ୍ର' ଯଶ
ତୁମ ଭଳି ନିର୍ଭୀକ କାହିଁ,
ଦିଲ୍ଲୀ ଦରବାରେ ରଖିବ
ଓଡ଼ିଆଙ୍କ ଟେକ
ତୁମ ହୃଦୟର ପ୍ରତି ସ୍ପନ୍ଦନରେ
ଆନ୍ଦୋଳିତ ହେଉଥିଲା ଆମ ପାଇଁ
ସପନ ମୂଳକ
ପ୍ରବାଦ ପୁରୁଷ ହେ ବିଜୁ ପଟ୍ଟନାୟକ ।
ସ୍ମରଣ କରଇ ତୁମକୁ ଆଜିଏ ଯୁବକ
କିଏ ଗେହ୍ଲା କିଏ ତୁମ ଅବୁଝା ଶାବକ
ତୁମ କଥାର ପ୍ରତିଶବ୍ଦେ ଥିଲା ଅବା କାଉଁରୀ କୁହୁକ
ନିର୍ବାଚନ ରଣାଙ୍ଗନେ ବ୍ୟକ୍ତିତ୍ୱର ସ୍ୱତନ୍ତ୍ର ମହକ
ପ୍ରବାଦ ପୁରୁଷ ହେ ବିଜୁ ପଟ୍ଟନାୟକ ।
ଗ୍ରାମ୍ୟ ସମୃଦ୍ଧି ଯୋଜନା ମା'କୁ ସମ୍ମାନ
ପଛୁଆ ସମାଜ ପାଇଁ ଥିଲା ତୁମ ଧ୍ୟାନ
ଆଧୁନିକ ଓଡ଼ିଶାର ହେ ନବ ନିର୍ମାତା
କଳଗାଏ ବିଜୁ ଗୀତି
ନଳଧୂଆଁ ପ୍ରଚାରଇ ବିଜୁର ବାରତା
ଏ ଜାତିର ସ୍ୱାର୍ଥ ପାଇଁ ସାରା ବିଶ୍ୱେ କେତେ ନ ବୁଲିଛ
କେତେ ଯେ ବଣିକ ଆସି ତୁମ ବନ୍ଦରେ
ଲଗାଇଲେ ପୋତ
ତମସାଚ୍ଛନ୍ନ ରାଇଜର ହେ ଜ୍ଞାନ ଆଲୋକ
ପ୍ରବାଦ ପୁରୁଷ ହେ ବିଜୁ ପଟ୍ଟନାୟକ ।

ଇଉଟି ଆଇ ବ୍ୟାଙ୍କ ରିଟେଲ ଆସେଟ୍
ଶ୍ରୀୟା ଛକ, ଭୁବନେଶ୍ୱର



# କଳିଙ୍ଗର ମୁକୁଟବିହୀନ ସମ୍ରାଟ ବିଜୁ ପଟ୍ଟନାୟକ

କାଞ୍ଚନାରାୟଣ ମହାନ୍ତି

**ଆ**ନନ୍ଦ ଭବନ - ବିଜୁ ପଟ୍ଟନାୟକଙ୍କର ଜନ୍ମସ୍ଥାନ । ଯାହା ଆଜି ଗୋଟାଏ ଜାତି ଇତିହାସର ମୁକସାକ୍ଷୀ ହେବାକୁ ଯାଉଛି । ଏହା ହେବ ଏକ ଜାତୀୟ ପୀଠ । ଉତ୍କଳ ଜନନୀର ମୁକୁଟବିହୀନ ସମ୍ରାଟଙ୍କ କେତେ ବାଲ୍ୟଠାରୁ ରାଜନେତା ଜୀବନର ଅସରନ୍ତି ସ୍ମୃତିର ଗନ୍ତାଘର ତାହାକୁ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିବେ ତାଙ୍କର ସୁଯୋଗ୍ୟ ଦାୟଦ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ସୁଖରକଥା ନିଶ୍ଚୟ । ଏଠି ରହିବ ପୁଣି ଏକ ଲାଇବ୍ରେରୀ ଏବଂ ଦିବଂଗତ ଜନନାୟକଙ୍କର ଜୀବନାଦର୍ଶର ଚିତ୍ରମାଳା ।

ମୁକ୍ତି ସଂଗ୍ରାମର ଦୁର୍ଦ୍ଧର୍ଷ ଯୋଦ୍ଧା, ମହାଉଦାର, ମହାମନା କିମ୍ବଦନ୍ତୀ ପୁରୁଷ, ଓଡ଼ିଶାର ଅଦ୍ୱିତୀୟ ଚଳନ୍ତି ଇତିହାସ କଳିଙ୍ଗର ଦ୍ୱିତୀୟ ଖାରବେଳ ବୋଲି ସ୍ୱୀକାର କରିବାକୁ ଉଚିତ୍ ମଣନ୍ତି ତାଙ୍କର ଦୁର୍ବାର ବ୍ୟକ୍ତିତ୍ୱ କଥା ଶୁଣିଲେ ବିସ୍ମିତ ଲାଗେ ।

ଏଇ କଟକ ତୁଳସୀପୁର ଆନନ୍ଦ ଭବନରେ ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀ ଯେ କି ତତ୍କାଳୀନ ଜଣେ ମୁକ୍ତିସଂଗ୍ରାମୀ ଥିଲେ ତାଙ୍କୁ ଶ୍ରୀମତୀ ପଟ୍ଟନାୟକ ଭାବରେ ସେ କେତେବାର ଆତ୍ମଗୋପନ କରିବାକୁ ସୁଯୋଗ ଦେଇଛନ୍ତି ।

ଇଂରେଜର ହୁକୁମ ଥିଲା ଜୀବନ୍ତ ଅବସ୍ଥାରେ ତାଙ୍କୁ ଧରେଇ ଦେଲେ ୪୦ ହଜାର ଟଙ୍କା ପୁରସ୍କାର ଦିଆଯିବ । ଅଦ୍ଭୁତ ବୈମାନିକ ଦକ୍ଷତା ଯୋଗୁଁ ସେତେବେଳେ କାହାକୁ ଉଡ଼େଇ ନେଇ ସୁରକ୍ଷା ଦେଉଥିଲେ ଗୁପ୍ତ ସନ୍ତ୍ରାସ ସଂଗ୍ରହ କରୁଥିଲେ ଇଂରେଜ ଶାସକ ଜାଣି ପାରୁ ନଥିଲା । ତେବେ ତାଙ୍କ ପ୍ରତି କଡ଼ା ନଜର ରଖି ୧୯୪୩ ମସିହା ଜାନୁଆରୀ ୧୩ ତାରିଖରେ ଦିଲ୍ଲୀରେ ତାଙ୍କୁ ଗିରଫ କଲା । ହାତଗୋଡ଼ରେ ବେଢ଼ି ପକାଇ ରାଜରାସ୍ତାରେ ଚଲେଇ ଚଲେଇ ନେଲା ଲାଲକିଲ୍ଲା ଦୁର୍ଗକୁ । ବେଢ଼ି ଉପରେ କୋରଡ଼ା ମାଡ଼ ହେଉଥାଏ । ଝର୍‌ଝର୍ ରକ୍ତ ବେଢ଼ି ଘସି ହୋଇ ବୋହିଯାଉଥାଏ ।

ଇଂରେଜ ସରକାର ଦ୍ୱାର ସେକ୍ରେଟେରୀ ଥିଲେ ସଂଗ୍ରାମୀଙ୍କୁ ବର୍ବର ନିର୍ଯାତନା ଦେବାରେ କୁଖ୍ୟାତ ଇନ୍ଦୁଲାଲ ତ୍ରିବେଦୀ । ଶୋଷରେ ବିଜୁବାବୁ ତଣ୍ଟି ଶୁଖିଯିବାରୁ ପାଣି ମାଗିଥିଲେ । ଉତ୍ତରରେ ଘୋର ତାଚ୍ଛଲ୍ୟ କରି ତ୍ରିବେଦୀ କହିଥିଲେ - ଗୋରା ସରକାର ବିରୁଦ୍ଧରେ ଠିଆହେବାର ପରିଣାମ କେତେ ଭୟାବହ ଏଥର ବୁଝ ଟୋକା ।

ସେଇ ଦାରୁଣ ତାଚ୍ଛଲ୍ୟ ଭାଷାରେ ବିଜୁବାବୁ ଭୋକଶୋଷ ଭୁଲିଯାଇଥିଲେ କିନ୍ତୁ ଲକ୍ଷ୍ୟଥିଲା ଅଟଳ ଓ ସୀମାହୀନ । ଏମିତି ହୋଇଥିଲା ଯେ ସ୍ୱାଧୀନ ଭାରତର ପରବର୍ତ୍ତୀ ସମୟରେ ସେଇ ଇନ୍ଦୁଲାଲ ତ୍ରିବେଦୀ ଓଡ଼ିଶାର ରାଜ୍ୟପାଳ ହୋଇଥିଲେ । ବାବା ସ୍ୱର୍ଗତଃ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ଓ ମାଆ ଆଶାଲତା ରାୟଙ୍କ ଚାରିଟି ସ୍ତବକ ଭିତରେ ତିନୋଟି ପୁଅ, ଗୋଟିଏ ଝିଅ । ତିନିପୁଅ ହେଲେ ଶ୍ରଦ୍ଧାନନ୍ଦ, ବିଜୟାନନ୍ଦ ଓ ଜୟାନନ୍ଦ କଟକର ବ୍ରିଟିଶ ଅମଳର ନାଲି କୋଠା ମିଶନ ସ୍କୁଲ (ବର୍ତ୍ତମାନ ଖ୍ରୀଷ୍ଟ କଲିଜିଏଟ୍ ସ୍କୁଲ)ରେ ସେମାନେ ଶିକ୍ଷା ଆରମ୍ଭ କରିଥିଲେ ।

ପ୍ରାଥମିକ ମଧ ଇଂରାଜୀ ଶିକ୍ଷା ଶେଷ କରି ବିଜୁବାବୁ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ନାଁ ଲେଖାଇଥିଲେ । କଟକ ତାଙ୍କର ଜନ୍ମମାଟି । ସେ ମହାନଦୀକୂଳ ଥିବା ମଧୁସୂଦନ ନଗର ତୁଳସୀପୁର 'ଆନନ୍ଦଭବନ'ରେ ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ ଜନ୍ମ ହୋଇଥିଲେ । ସେତେବେଳେ ଏତେ ଜନଗହଳି ନଥିଲା କି କୋଠାବାଡ଼ି ନଥିଲା । କିନ୍ତୁ କଟକ ଥିଲା ରାଜାରାଜୁଡ଼ା ଜମିଦାରମାନଙ୍କର ବିଳାସଭୂମି ।

କଟକରେ କଡ଼ାକଡ଼ି ଇଂରେଜ ଶାସନ । ପାଖରେ କିଲ୍ଲାପଡ଼ିଆ । ଇଂରେଜ ସାହେବ ଉଡ଼ାଜାହାଜରେ ସେଠାରେ ଆସି ଓହ୍ଲେଇ ଥାନ୍ତି । ବିଜୁବାବୁ ସେତେବେଳେ ସାନପିଲା । କଟକ କିଲ୍ଲାପଡ଼ିଆରେ ଉଡ଼ାଜାହାଜ ରହିଛି । ଆଗ୍ରହରେ ଉଡ଼ାଜାହାଜ ଦେଖିବାକୁ ଯାଇ ତା' ଦେହରେ ହାତ ମାରି ଦେଇଥିଲେ । ଛୋଟପିଲା ବୋଲି ତାହା ବିବେଚନା କରାନଯାଇ ଲାଠି ପାହାର ସହିବାକୁ ପଡ଼ିଥିଲା ।

ସେଇଦିନ ସେ ସଂକଳ୍ପ କରିଥିଲେ ଯେ ଦିନେ ନା ଦିନେ ଜଣେ ପାଇଲଟ୍ ହେବେ । ଖାଲି ଯେ ଉଡ଼ାଜାହାଜର ପାଇଲଟ୍ ହେଲେ ତା' ନୁହେଁ, ଏ ଦେଶ ତଥା ଜାତିକୁ ଆଗେଇ ନେବାକୁ ମଧ ପାଇଲଟ୍ ସାଜିଲେ । ତାଙ୍କ ଜୀବନର ପ୍ରତିଟି ଘଟଣା ଗୋଟିଏ ଗୋଟିଏ ଯୁଗାନ୍ତକାରୀ ଅଧ୍ୟାୟ ।

୧୯୨୬ ମସିହାର କଥା । ସେ ସେତେବେଳକୁ ମାତ୍ର ୧୦ ବର୍ଷର ବାଳକ । ସ୍ୱରାଜ ଆଶ୍ରମରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ପାଇଁ ଲୋକ ଗହଳି କାହିଁରେ କ'ଣ । ଦଶବର୍ଷର ବାଳକ ଭିତରେ ଦେଶପ୍ରେମ ଓ ଜନସେବାର ମଞ୍ଜି ତା' ପରିବାର ବୁଣି ଦେଇଥିଲା । ଗାନ୍ଧିଜୀଙ୍କୁ ଦେଖା କରିବାର ସଂକଳ୍ପ ତାକୁ ଆଗେଇ ନେଇ ଚାଲିଲା । ଗହଳି ଭେଦି ଆଗେଇ ଚାଲିଲାବେଳେ ପୋଲିସ୍‌ର ଲାଠିମାଡ଼ରେ ମୁଣ୍ଡ ଫାଟି ରକ୍ତ ବୋହିଗଲା । ତଥାପି ମୁଣ୍ଡରୁ ରକ୍ତପୋଛି ଗାନ୍ଧୀଙ୍କ ସମ୍ମୁଖରେ ଆଣ୍ଠେଇପଡ଼ି ସେ ଶପଥ କରିଥିଲେ ଗୋରା ପୋଲିସ୍‌ର ଏ ଜୁଲମର ପ୍ରତିଶୋଧ ନିଶ୍ଚୟ ନେବି ।

ମିଶନ ସ୍କୁଲରେ ପାଠପଢ଼ିବା ବେଳେ ଜଣେ ୟୁରୋପୀୟ ସର୍ଜେଣ୍ଟ ତାଙ୍କୁ ମାଡ଼ମାରି ମୁଣ୍ଡ ଫଟେଇ ଦେଇଥିଲା । ସେ ଘରକୁ ଫେରିଲା ପରେ ବାପା କହିଥିଲେ - 'ସେ ସର୍ଜେଣ୍ଟର ମୁଣ୍ଡ ଫଟେଇ ପାରିଲୁନି ?' ଠିକ୍ ମାସକ ପରେ ବାରବାଟୀ କିଲ୍ଲାରେ ହକି ଖେଳୁଥିବାବେଳେ ବିଜୁବାବୁ ସେହି ସର୍ଜେଣ୍ଟର ଗୋଡ଼କୁ ହକିଷ୍ଟିକ୍‌ରେ ମାରି ଭାଙ୍ଗି ଦେଇଥିଲେ ।

ଦେଶମାତୃକାର ସେବାରେ ସମର୍ପି ଦେଇ ସେ ସର୍ବଦା ନୂତନ ଅଧ୍ୟାୟ ଆରମ୍ଭ କରିଛନ୍ତି । ବିଜୁ ପଟ୍ଟନାୟକ କହିଲେ କଳିଙ୍ଗ ଓଡ଼ିଶା ବା ଉତ୍କଳ ଜନନୀର ବରପୁତ୍ରକୁ ବୁଝାଏ । ଯାହା ସେ କରିଛନ୍ତି ଏମିତି କାହାରିଦ୍ୱାରା ସମ୍ଭବ ହୋଇନାହିଁ ।

ବିଜୁ ପଟ୍ଟନାୟକଙ୍କୁ କେଉଁ ଭାଷାରେ ବର୍ଣ୍ଣନା କରି କହିହେବ ତାହା ଚିନ୍ତା କରିବାକୁ ପଡ଼େ । ସେ ଜଣେ କର୍ମବୀର, ଜନନାୟକ, ସହୃଦୟ ଦୁର୍ଦ୍ଦମନୀୟ ଡେୟାର ଡେଭିଲ, ମହାନ ସ୍ୱାଧୀନତା ସଂଗ୍ରାମୀ, ଶାସନର ସୂତ୍ରଧର, ସମାଜସେବୀ ଉଚ୍ଚାଭିଳାଷି ମହାମନିଷୀ ଥିଲେ ।

ତାଙ୍କ ସଂପର୍କରେ ଜେନ୍ ହନ୍ସଲେ କହିଛନ୍ତି - ଏ ହେଉଛନ୍ତି ସେହି ଭାରତୀୟ ଯାହାଙ୍କର କାର୍ଯ୍ୟାବଳୀ ଲିପିବଦ୍ଧ କଲେ ଗ୍ରନ୍ଥଟିଏ ହୋଇଯିବ ।

୧୯୩୨ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍‌ସା କଲେଜରେ ଆଇ.ଏସ୍.ସି. ପଢ଼ିଥିଲେ । ସେହିଠାରୁ ସାଙ୍ଗମାନଙ୍କ ସହ ସାଇକେଲରେ ପେଶୱାର ପର୍ଯ୍ୟନ୍ତ ଯାତ୍ରା ସମସ୍ତଙ୍କୁ ଚକିତ କରିଥିଲା ।

ସେଇଠି ବି.ଏସ୍‌ସି. ପଢ଼ିବା ସମୟରେ ଉଡ଼ାଜାହାଜ ଚାଳନା ଶିକ୍ଷା ପାଇଁ ମନୋନିବେଶ କରି ସେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ପାଇଲଟ୍ ହୋଇପାରିଥିଲେ । ସେତେବେଳେ ୧୯୩୪ ମସିହା । ପାଇଲଟ୍ ଟ୍ରେନିଂ ସରୁ ସରୁ ଗୋଭାନ୍ ବ୍ରଦର୍ସଙ୍କ ଦ୍ୱାରା ପରିଚାଳିତ 'ଇଣ୍ଡିଆନ ନ୍ୟାସନାଲ ଏୟାରୱେଜ'ରେ ନିଯୁକ୍ତି ପାଇଥିଲେ । ମୋଟା ଦରମା ଓ ପ୍ରଚୁର ସମ୍ମାନ ସତ୍ତ୍ୱେ ତାଙ୍କ ମନ ସ୍ୱଦେଶ ଚିନ୍ତାରେ ବିଚଳିତ ଥିଲା ।

ଦୂର ନୀଳଆକାଶର ଇଗଲ ଭଳି ଉଡ଼ିବାର ସ୍ୱପ୍ନକୁ ଭୁଲି ସେ ସାରା ଦେଶର ଉନ୍ନତିପାଇଁ କଳିଙ୍ଗର ପୁଣ୍ୟଭୂମିକୁ ଓହ୍ଲାଇ ଆସିଲେ । ସାଜିଲେ ଜନନାୟକ । ଜାତୀୟ ଆନ୍ଦୋଳନରେ ଭାଗ ନେବାକୁ ତାଙ୍କ ମନ ଅସ୍ଥିର ହେଲା ।

ଏହି ସମୟରେ ଜୟପ୍ରକାଶ ନାରାୟଣଙ୍କ ସହ ସାକ୍ଷାତ୍ ହେଲା । ଗୋରା ପୁଲିସ୍ ଆଖିରେ ଧୂଳି ଦେଇ ବିଜୁବାବୁ ଜୟପ୍ରକାଶଙ୍କୁ ଉଡ଼େଇ ନେଇଗଲେ ଲକ୍ଷ୍ୟସ୍ଥଳକୁ । ବିଜୁବାବୁ ଚାକିରି ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାକୁ ଚାହୁଁଥିଲେ କିନ୍ତୁ ଜୟପ୍ରକାଶ ନାରାୟଣଙ୍କ କଥା ମାନି ଚାକିରିରେ ରହି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଉଡ଼ାଜାହାଜରେ ନେଇ ଗୁପ୍ତ ସ୍ଥାନରେ ପହଞ୍ଚାଇ ଦେବାର ଗୁରୁଦାୟିତ୍ୱ ସୂଚାରୁ ରୂପେ ସଂପାଦନ କରିଥିଲେ ।

ଗୋରା ଗୋଇନ୍ଦାମାନଙ୍କ ଦୃଷ୍ଟିର ଅନ୍ତରାଳରେ ସେ ବ୍ରିଟିଶ ରୟାଲ୍ ଏୟାର ଫୋର୍ସ ବ୍ୟବହାର କରି ଭାରତର ମୁକ୍ତି ସଂଗ୍ରାମୀ ଅରୁଣା ଆସଫ ଅଲ୍ଲୀ, ଅଶୋକ ମେହେଟ୍ଟା, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତିଙ୍କୁ ଅତି ଗୋପନୀୟ ଭାବରେ ସେମାନଙ୍କର ଗନ୍ତବ୍ୟସ୍ଥଳରେ ବିମାନ ଚାଳନା କରି ପହଞ୍ଚାଇ ପାରୁଥିଲେ । ବହୁ ଗୁପ୍ତ ଦଲିଲପତ୍ର ଏବଂ ଇଂରେଜମାନଙ୍କର ମନ୍ତ୍ରଣା ସଂଗ୍ରହ କରି ମହାତ୍ମା ଗାନ୍ଧୀଙ୍କୁ ଯୋଗାଇ ଦେଉଥିଲେ ।

ବିଜୁ ପଟ୍ଟନାୟକଙ୍କ ଗୋଟିଏ ଦୁଃସାହସିକ କାହାଣୀ ଆନ୍ତର୍ଜାତୀୟ ସ୍ତରରେ ଆଲୋଚିତ ହୋଇ ବିଶ୍ୱକୁ ଚକିତ କରି ଦେଇଥିଲା । ସେ ଏହି ଓଡ଼ିଆମାଟିର ବୀରସନ୍ତାନ ଯାହାଙ୍କ ଅପୂର୍ବ ବୀରତ୍ୱର ପରାକାଷ୍ଠାକୁ ୧୯୬୨ର ଚିନା ସମରରେ ଉପସ୍ଥିତ ଥିବା ବିଶ୍ୱବିଖ୍ୟାତ କମାଣ୍ଡର ଲେଫ୍ଟନାଣ୍ଟ ଜେନେରାଲ ବି.ଏସ୍. କାଉଲଙ୍କ ରଚିତ ଅଭିଜ୍ଞତା 'ଅନଟୋଲଡ ଷ୍ଟୋରୀ' ପୁସ୍ତକର ସେ ଇଣ୍ଡୋନେସିଆ ଅଭିଯାନ, ଚୀନ୍-ଭାରତ ଯୁଦ୍ଧର ବୀରତ୍ୱ, ଦେଶପ୍ରୀତି ପରାୟଣତା ଆଲୋଚନା କରିଛନ୍ତି ।

ସେ ଥିଲେ ଡେୟାର ଡେଭିଲ୍ । ଅସାଧ କାର୍ଯ୍ୟକୁ ଅକ୍ଳେଶରେ ସାଧ କରିବା ତାଙ୍କ ପାଇଁ ଏକ ଚ୍ୟାଲେଞ୍ଜ ଥିଲା ।

ଗାନ୍ଧିଜୀଙ୍କ ନେତୃତ୍ୱକୁ ସମ୍ମାନ ଦେଇ ଇଣ୍ଡୋନେସିଆର ଜାତୀୟବାଦୀ ନେତାଗଣ ସାମ୍ରାଜ୍ୟବାଦୀ ଡଚ୍ ଶାସନ ବିରୋଧରେ ଯୁଦ୍ଧ ଘୋଷଣା କରି ସମାନ୍ତରାଳ ସରକାର ଗଠନ କରିଥିଲେ । ଡଚ୍‌ମାନେ ଜାକର୍ତ୍ତା ଅବରୋଧ କରିବାରୁ ଜାତୀୟବାଦୀ ନେତା ମହମ୍ମଦ ହଟ୍ଟାଙ୍କୁ ଦିଲ୍ଲୀ ଆଣିବା ନିମନ୍ତେ ନେହେରୁ ଏ ଗୁରୁଦାୟିତ୍ୱକୁ ବିଜୁ ପଟ୍ଟନାୟକଙ୍କ ଉପରେ ନ୍ୟସ୍ତ କଲେ । ନିଜ ଜୀବନକୁ ବିପନ୍ନ କରି ଇଣ୍ଡୋନେସିଆର ଜାତୀୟବାଦୀ ନେତାଙ୍କୁ ବିଜୁବାବୁ ବିମାନରେ ଉଡ଼େଇ ଆଣି ଦିଲ୍ଲୀରେ ପହଞ୍ଚାଇ ଦେଇଥିଲେ । ତାଙ୍କ ବିମାନକୁ ଯୁଦ୍ଧର ଘନଘଟା ମଧ୍ୟରେ ବନ୍ଧୁକ ଗୁଳି ଓ ବୋମା ମଧ୍ୟ ଚମକାଇ ପାରିଲା ନାହିଁ ।

ସେ ପାଲଟା ଉତ୍ତର ଦେଇଥିଲେ - 'ଯଦି ମୋ ବିମାନକୁ ଡଚ୍‌ମାନଙ୍କର ଗୁଳି ସ୍ପର୍ଶ କରେ, ତେବେ ଭାରତ ଆକାଶରୁ ସବୁ ଡଚ୍ ବିମାନଗୁଡ଼ିକୁ ଧ୍ୱଂସ କରିଦିଆଯିବ ।'

ଇଣ୍ଡୋନେସିଆ ସ୍ୱାଧୀନ ହେଲାପରେ ରାଷ୍ଟ୍ରପତି ସୁକର୍ଣ୍ଣ ବିଜୁ ପଟ୍ଟନାୟକଙ୍କୁ ଆନ୍ତଃରାଷ୍ଟ୍ରୀୟ ମର୍ଯ୍ୟାଦା ସହ ଭୂମିପୁତ୍ର ସମ୍ମାନରେ ଭୂଷିତ କରିଥିଲେ । ଏହି ସମ୍ମାନ ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ ଯାହା ଆମ ଓଡ଼ିଆ ମାଟିର ବରପୁତ୍ର ବିଜୁ ପଟ୍ଟନାୟକ ଗ୍ରହଣ କରିଥିଲେ । ପୁନଶ୍ଚ ଦେଶ ସ୍ୱାଧୀନତା ପୂର୍ତ୍ତିର ୫୦ ବର୍ଷର ଭବ୍ୟ ଉତ୍ସବରେ First class star of dedication ଉପାଧି ପ୍ରଦାନ କରାଯାଇଥିଲା । ୧୯୭୩ ମସିହାରେ ଇଣ୍ଡୋନେସିଆ ସରକାର ଭୂମିପୁତ୍ର ସମ୍ମାନ ସହ ବହୁ ଉପହାର ପ୍ରଦାନ କରିଥିଲେ - ଯଥା- ଗୋଟିଏ ବିଶାଳ ପ୍ରାସାଦ, ଗୋଟିଏ ତେଲଖଣି, କିଛି ଜଙ୍ଗଲ ଓ ଗୋଟିଏ ବନ୍ଦର । ଏତେ ବିଭବକୁ ବିନମ୍ରଭାବେ ସେ ଗ୍ରହଣ ନକରି କହିଥିଲେ - 'କଳିଙ୍ଗର ରାଜା କୌଣସି ଉପହାର ନିଅନ୍ତି ନାହିଁ । ମୁଁ ହେଉଛି କଳିଙ୍ଗମାଟିର ସନ୍ତାନ, ମୁଁ କେମିତି ଏସବୁ ଉପହାର ଗ୍ରହଣ କରିପାରିବି ?'

ତାଙ୍କର ସଂପତ୍ତିର ମୋହ ନଥିଲା । ଜୀବନରେ ଦ୍ୱିତୀୟବାର ଓଡ଼ିଶା ଶାସନ ଦାୟିତ୍ୱରେ ରହି ସେ ଦରମା ଗୋଟିଏ ଟଙ୍କା ନେଉ ଥିଲେ ଏବଂ ସାଇକେଲରେ ସେକ୍ରେଟେରୀଏଟ୍ ଆସୁଥିଲେ । ଧନକୁ ସେ ବଡ଼ ବୋଲି ଭାବୁ ନଥିଲେ । ମନକୁ ବଡ଼ ଭାବୁଥିଲେ । ନିଜର ବଦାନ୍ୟ ପଣିଆ ଲାଗି ଚୌଦ୍ୱାର ପରି ଶିଳ୍ପାଞ୍ଚଳକୁ ସେ ତୁଚ୍ଛମଣି ହାତଛଡ଼ା କରି ଦେଇଥିଲେ ।

ଏ ଯାବତ୍ ଓଡ଼ିଶାର ଶିଳ୍ପ ପ୍ରଗତି ଯାହାକିଛି ହେବା ସମ୍ଭବ ହୋଇଛି ସବୁରି ମୂଳରେ ସେହି ବରେଣ୍ୟ ପୁରୁଷ ବିଜୁ ପଟ୍ଟନାୟକ ।

ଓଡ଼ିଶାର ପ୍ରାଚୀନ ଗୌରବ କଳିଙ୍ଗର ବିକାଶ ପାଇଁ ସେ କଳିଙ୍ଗ ପୁରସ୍କାର ପ୍ରଚଳନ କରିଛନ୍ତି । ଓଡ଼ିଶାର ଐତିହାସିକ ନାମ କଳିଙ୍ଗ ଅନୁସାରେ ପ୍ରଥମେ ଏହି ଟ୍ରଷ୍ଟ ୧୯୫୦ରେ ଗଠନ କରାଯାଇଥିଲା । ଏହି ପୁରସ୍କାର ୧୯୫୨ ମସିହାରୁ ବିଶ୍ୱର ବିଶିଷ୍ଟ ବୈଜ୍ଞାନିକ ଓ ଲୋକପ୍ରିୟ ବିଜ୍ଞାନ ସ୍ରଷ୍ଟାମାନଙ୍କୁ ୟୁନେସ୍କୋ ମାଧ୍ୟମରେ ପ୍ରଦାନ କରାଯାଉଛି । ଏବେ ୫୨ ଜଣ ବିଶିଷ୍ଟ ବୈଜ୍ଞାନିକଙ୍କୁ ଏହି ପୁରସ୍କାର ପ୍ରଦାନ କରାଯାଇ ସାରିଲାଣି ।

'କଳିଙ୍ଗ ଫାଉଣ୍ଡେସନ୍' ଦ୍ୱାରା ୟୁନେସ୍କୋକୁ ଦିଆଯାଇଥିବା ଅନୁଦାନ ଅର୍ଥର ସୁଧରୁ ପ୍ରତ୍ୟେକ ପୁରସ୍କାର ବିଜେତାଙ୍କୁ ଅର୍ଥ ଓ ମାନପତ୍ର ପ୍ରଦାନ କରାଯାଇଥାଏ । ଏହାକୁ ୟୁନେସ୍କୋର ଚେୟାରମ୍ୟାନ ପ୍ରଦାନ କରିଥାନ୍ତି । ୟୁନେସ୍କୋ ମଧ୍ୟ ଏକ ସ୍ୱର୍ଣ୍ଣପଦକ ପ୍ରଦାନ କରିଥାଏ ।

ଓଡ଼ିଶାର ଶାସନକୁ ଅର୍ଦ୍ଧଶତାବ୍ଦୀ ଧରି ସେ ନିୟନ୍ତ୍ରଣ କରିଥିଲେ । ଭାରତ ଶାସନରେ ନିଜର କେନ୍ଦ୍ର ମନ୍ତ୍ରୀ ପଦ ସହ ପ୍ରଚ୍ଛନ୍ନ ଭୂମିକା ଦୀର୍ଘବର୍ଷ ଅବଧାରିତ ଥିଲା ।

୧୯୬୧ ଜୁନ୍ ୨୩ ତାରିଖରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେହି ସମୟରେ ହିଁ ଓଡ଼ିଶାର ଶିଳ୍ପ ବିକାଶର ଶୁଭାରମ୍ଭ ହୋଇଥିଲା । ପାରାଦ୍ୱୀପ ବନ୍ଦର, ଖଣି ଅଞ୍ଚଳକୁ ପରିବହନ ସୁବିଧା ଲକ୍ଷ୍ୟରେ ୯୧ କି.ମି. ରାସ୍ତା ଦଇତାରୀ-ପାରାଦ୍ୱୀପ ରାସ୍ତା, ବାଲିମେଳା ବନ୍ଧ ଯୋଜନା, ତାଳଚେର ଥର୍ମାଲ, ସୁନାବେଡ଼ା ମିଗ୍ ବିମାନ କାରଖାନା, ବଡ଼ବିଲ୍ ଲୁହା କାରଖାନା, ନାଲ୍‌କୋ ଆଲୁମିନିୟମ୍ ପ୍ରକଳ୍ପ ବହୁ କ୍ଷୁଦ୍ର ମଧ୍ୟମ ଶିଳ୍ପ ଓ.ଟି.ଏମ୍., କଳିଙ୍ଗ ଟିଉବ୍, କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ରେଫ୍ରିଜେରେଟର କଳିଙ୍ଗ ଆଇରନ୍ ୱାର୍କସ୍, କଳିଙ୍ଗ ସମ୍ବାଦପତ୍ର ପ୍ରତିଷ୍ଠା ପଛରେ ମହତ୍ ଉଦ୍ଦେଶ୍ୟ ଥିଲା ଓଡ଼ିଶାକୁ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠିତ କରିବା ।

ଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ । ରାଉରକେଲାର ଆଞ୍ଚଳିକ ଇଂଜିନିୟରିଂ କଲେଜ ବିଭିନ୍ନ ଅଞ୍ଚଳରେ ବିଜ୍ଞାନ କଲେଜ, ଇଂଜିନିୟରିଂ ଓ ପଲିଟେକ୍‌ନିକ୍ ଶିକ୍ଷାର ପ୍ରସାର ସାଙ୍ଗକୁ ଭୁବନେଶ୍ୱର ସୈନିକ ସ୍କୁଲ, ଆଞ୍ଚଳିକ ତାଲିମ୍ କଲେଜ ପ୍ରତିଷ୍ଠା । ପ୍ରଥମରୁ ପଞ୍ଚମ ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ଜାତୀୟକରଣ, ସମ୍ବଲପୁର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ ଓ ମେଡିକାଲ କଲେଜ ତାଙ୍କ ଶାସନ କାଳର ମାଇଲଖୁଣ୍ଟ । ଚାରବାଟିଆ ସାମରିକ ବିମାନ ଅବତରଣ କେନ୍ଦ୍ର ତାଙ୍କ ଶାସନର ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ।

୧୯୯୦ ମାର୍ଚ୍ଚ ୫ ତାରିଖରେ ବିଜୁବାବୁ ପୁଣି ଓଡ଼ିଶା ଶାସନ ଭାର ଗ୍ରହଣ କରି ଜୀବନର ଶେଷ ଅଭିଳାଷ ସ୍ୱରୂପ ମହିଳାଙ୍କ ପାଇଁ ୩୦ ପ୍ରତିଶତ ସ୍ଥାନ ସଂରକ୍ଷଣଠାରୁ ତେରରୁ ତିରିଶ ଜିଲ୍ଲା ପରି ବହୁ ଜନମଙ୍ଗଳ କାର୍ଯ୍ୟ କରିଯାଇଛନ୍ତି ।

ଏକଦା ବିଶ୍ୱର ୧୬ ଜଣ କୋଟିପତିମାନଙ୍କ ମଧ୍ୟରୁ ସେ ଜଣେ ଥିଲେ କିନ୍ତୁ ବେପରୱା ଖର୍ଚ୍ଚ ତାଙ୍କୁ ଅପବ୍ୟୟ ରୋକିବାରେ ସାହାଯ୍ୟ କରିପାରିଲା ନାହିଁ ।

୧୯୯୭ ମସିହା ଅପ୍ରେଲ ୧୭ ତାରିଖରେ ସାରା ଓଡ଼ିଶା ତା'ର ଶ୍ରେଷ୍ଠ ସନ୍ତାନକୁ ହରାଇ ଯେମିତି ନିଃସ୍ୱ ହୋଇଗଲା । ଏକାବେଳକେ ଦୁଇଟି ଦେଶର ଜାତୀୟ ପତାକା ନଇଁ ପଡ଼ିଥିଲା । ଶହ ଶହ ଲୋକ ଶୋକାକୁଳ ହୋଇ ପୁରୀ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ସେମାନଙ୍କର ପ୍ରିୟ ନେତାଙ୍କୁ ଶେଷ ସମ୍ମାନ ଜଣାଇବା ପାଇଁ ଆଉ ଏକ ରଥଯାତ୍ରାର ପରିବେଶ ସୃଷ୍ଟି କରି ବଡ଼ଦାଣ୍ଡରେ ଶୋକଯାତ୍ରାରେ ବେସାହାରା ହୋଇପଡ଼ିଥିଲେ । ତାହା ହିଁ ତାଙ୍କ ପାଇଁ ଓଡ଼ିଶାବାସୀଙ୍କର ସର୍ବଶ୍ରେଷ୍ଠ ଆନ୍ତରିକତା ଓ ଲୁହ ଶ୍ରଦ୍ଧାଞ୍ଜଳି ଥିଲା ।

ବିଜୁ ପଟ୍ଟନାୟକଙ୍କ ଅନନ୍ୟ ଦେଶପ୍ରୀତି, ଦୁଃସାହସର କାହାଣୀ ଓ ସମସ୍ତ କୀର୍ତ୍ତିରାଜି ଏ ଜାତିର ଇତିହାସକୁ ବନ୍ଦନୀୟ କରିବ । ସେ ବିଶ୍ୱ ଦରବାରରେ ଚିରସ୍ମରଣୀୟ ହୋଇ ରହିଛନ୍ତି ଓ ରହିବେ ।

'ଆଶ୍ରମ''
ଶ୍ରୀବିହାର କଲୋନି, କଟକ-୮

# ବିଜୁବାବୁ ଥିଲେ ବିଶ୍ୱନେତୃତ୍ୱ କ୍ଷେତ୍ରରେ ଜଣେ ପ୍ରଚଣ୍ଡ ନେତୃସ୍ଥାନୀୟ ବ୍ୟକ୍ତିତ୍ୱ



ଜଗତ୍ ଜୀବନ ରଥ

**କ**ଳିଙ୍ଗର ବରପୁତ୍ର, ଓଡ଼ିଆ ଜାତିର ସ୍ୱାଭିମାନ ବିଜୁବାବୁ ଥିଲେ ଅନନ୍ୟ । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକ ସହର ତୁଳସୀପୁରର ଆନନ୍ଦଭବନରେ ତାଙ୍କର ଜନ୍ମ ହେଲା ପରଠୁଁ ସ୍ରଷ୍ଟା ତାଙ୍କୁ ଯୋଗେଇଥିଲା ଅଖଣ୍ଡ ଶକ୍ତି ଓ ଯଥେଷ୍ଟ ସାହସ । ପିଲାବେଳୁ ଗୋରା ଫୌଜଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ ସାଙ୍ଗକୁ ରାଷ୍ଟ୍ରପ୍ରେମ ତଥା ବିଶ୍ୱପ୍ରେମର ଅଜଣା ଗୁରୁଦୀକ୍ଷା କାହିଁକି କେଜାଣି କେହି ଜଣେ ତାଙ୍କ କର୍ଣ୍ଣପଟ୍ଟରେ ଦୀକ୍ଷିତ କରାଇଥିଲେ । କଟକ ମିଶନ୍ ସ୍କୁଲରେ ପ୍ରାଥମିକ ଶିକ୍ଷାଠାରୁ ରେଭେନ୍ସା କଲେଜର ଶିକ୍ଷା ସମାପ୍ତି ପର୍ଯ୍ୟନ୍ତ ବିଦ୍ୟାଦାତ୍ରୀ ତାଙ୍କୁ ଯଥେଷ୍ଟ ପ୍ରତିଭାର ମହକରେ ମହକିତ କରିଥିଲେ ।

ସତେ ଯେମିତି ବିଶ୍ୱପ୍ରେମର ଏକ ସ୍ଫୁଲିଙ୍ଗ କାହିଁକି କେଜାଣି ତାଙ୍କୁ ଉଦ୍‌ବୁଦ୍ଧ କରୁଥିଲା । ତେଣୁ ସେ ବିଶ୍ୱବ୍ରହ୍ମାଣ୍ଡଟାକୁ ଉଡ଼ି ଉଡ଼ି ନିଜର ସନ୍ଦେଶ ପହଞ୍ଚାଇବା ତଥା ବିଶ୍ୱପ୍ରୀତିର ଏକ ପ୍ରବଳ ସ୍ୱପ୍ନ ସେ ଦେଖୁଥିଲେ । ତେଣୁ ଶିକ୍ଷା ସମାପ୍ତି ପରେ କୃତିତ୍ୱର ସହ ପାଇଲଟ୍ ଟ୍ରେନିଂ ସମାପ୍ତ କରିବା ପରେ ବିଜୁବାବୁ ଗୋଭାନ୍ ବ୍ରଦର୍ସଙ୍କ ଦ୍ୱାରା ପରିଚାଳିତ 'ଇଣ୍ଡିଆନ ନ୍ୟାସନାଲ୍ ଏୟାରୱେଜ୍'ରେ ପ୍ରଥମେ ନିଯୁକ୍ତି ପାଇ ଜଣେ ବିଶ୍ୱପ୍ରୀତିର ତଥା ଶାନ୍ତିର କପୋତ ପରି ଉଡ଼ି ବୁଲିଲେ ଓଡ଼ିଶାରୁ ଇଣ୍ଡୋନେସିଆ ତଥା ବିଶ୍ୱ ବ୍ରହ୍ମାଣ୍ଡ । ଏ ଉଡ଼ିବା ହିଁ ତାଙ୍କର ଥିଲା ମୂଳଲକ୍ଷ୍ୟ, ରାଷ୍ଟ୍ରପ୍ରେମର, ବିଶ୍ୱପ୍ରେମର । ନିଜ ଦୁର୍ବଳ ରାଜ୍ୟ, ନିଜ ଜନ୍ମମାଟି ଓଡ଼ିଶାକୁ ଯେପରି ଦେଖୁଥିଲେ, ସେଇ ଚକ୍ଷୁରେ ଦେଖୁଥିଲେ ଏସିଆ ମହାଦେଶର ଅନେକ ରାଷ୍ଟ୍ରକୁ ତଥା ଇଉରୋପର ଅନେକ ଦୁଃସ୍ଥ ପ୍ରପୀଡ଼ିତ ଅଞ୍ଚଳମାନଙ୍କୁ । ମୂଳ ଉଦ୍ଦେଶ୍ୟ ଥିଲା ରାଷ୍ଟ୍ରପ୍ରେମ, ବିଶ୍ୱପ୍ରୀତି, ବିଶ୍ୱଭ୍ରାତୃତ୍ୱ ତଥା ମାଟି, ମାଟିର ପ୍ରେମ' ନିବିଡ଼ ବନ୍ଧନ । ଏଠି ଗୋଟିଏ ମାଟିର ସ୍ୱପ୍ନ ସେ ଦେଖୁ ନଥିଲେ, ମାଟି, ମାଟିର ସ୍ୱପ୍ନ ସେ ଦେଖୁଥିଲେ ଏବଂ ତା'ର ଜ୍ୱଳନ୍ତ ଉଦାହରଣ ଥିଲା 'ଇଣ୍ଡୋନେସିଆ'ର ମୁକ୍ତି ସଂଗ୍ରାମ ତଥା ସେଠି ନିଜର ଅଂଶ ଗ୍ରହଣ ତଥା ସେହି ଅଞ୍ଚଳର ସେହି ବ୍ୟକ୍ତି ସମୂହଙ୍କର 'ବିଜୁବାବୁ'ଙ୍କର କର୍ମକୁ ଗ୍ରହଣ କରିବା ତଥା ତାଙ୍କୁ ସମ୍ମାନ ଦେବା । ତେଣୁ ସେ ସେଠାକାର 'ଭୂମିପୁତ୍ର' । ଠିକ୍ 'ମହାତ୍ମା'ଙ୍କର ଦକ୍ଷିଣ ଆଫ୍ରିକାର ସହ ସଂପର୍କପରି । ବିଜୁବାବୁ ମଧ୍ୟ 'ଇଣ୍ଡୋନେସିଆ' ପାଇଁ ମୁକୁଟବିହୀନ ସମ୍ରାଟ, ସ୍ନେହର ସାଗର, ସଂପର୍କର ପାରାବାର ।

ନିଜ ରାଜ୍ୟ ପାଇଁ ସେ ଅନେକ ସ୍ୱପ୍ନ ଦେଖିଥିଲେ । ଅନେକ କିଛି କରିଛନ୍ତି । ନିଜର ବେପରୁଆ, ଖିଆଲି ମନୋଭାବ ତାଙ୍କୁ ସରଳ, ନିଷ୍କପଟ ତଥା ଜଣେ ଟାଣୁଆ ନେତା ହିସାବରେ ଟାଣ କରି ରଖିଥିଲା । 'ବିଜୁବାବୁ'ଙ୍କ କ୍ଷେତ୍ରରେ ସବୁଠୁଁ ବଡ଼ କଥା ଥିଲା, ଜଣେ ବଳିଷ୍ଠ ରାଷ୍ଟ୍ରପ୍ରେମୀ ହିସାବରେ, 'ନିଜ ଅଞ୍ଚଳଟାକୁ ସିଏ ଯେମିତି ଦେଖୁଥିଲେ ଇଣ୍ଡୋନେସିଆ ପାଇଁ ଯାହାଚିନ୍ତା କରୁଥିଲେ । ଆମେରିକାର ଦୁଃସ୍ଥ ଅଞ୍ଚଳଗୁଡ଼ିକ ତଥା, ଗ୍ଲୋବର ଅନେକ ଦୁଃସ୍ଥ, ନିଷ୍ପେସିତ ଅଞ୍ଚଳ ପାଇଁ ତାଙ୍କର ହୃଦୟ ସେପରି ବିଳପିତ ହେଉଥିଲା ।

ଏହି ବିଶ୍ୱପ୍ରୀତି ପାଇଁ ବିଶ୍ୱର ନେତୃବୃନ୍ଦ ତାଙ୍କୁ ଭୂୟସୀ ପ୍ରେମ କରନ୍ତି, ଅନାବିଳ ସ୍ନେହ ପ୍ରଦାନ କରନ୍ତି । ନିଜରାଜ୍ୟ ଓଡ଼ିଶା ପାଇଁ, ଓଡ଼ିଆ ଭାଷାର ଉନ୍ନତି ପାଇଁ ତାଙ୍କର ଅବଦାନ ଚିରସ୍ମରଣୀୟ । ରାଜ୍ୟର ଉନ୍ନତି ପାଇଁ ତାଙ୍କର ଅବଦାନ ଚିରସ୍ମରଣୀୟ । ଛାତ୍ରଛାତ୍ରୀମାନଙ୍କ ମନରେ ଉଚ୍ଚଶିକ୍ଷା ପାଇବାରେ ଉତ୍ସାହିତ କରିବା ପାଇଁ 'କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ', ରାଉରକେଲାର ଇସ୍ପାତ କାରଖାନା, ଓ.ଟି.ଏମ୍., ସୁନାବେଡ଼ାର ମିଗ୍‌ବିମାନ କାରଖାନା, ସେଲ୍, ଆହୁରି ଅନେକ କିଛି ଏବଂ ଆହୁରି ଅନେକ କିଛି ସ୍ୱପ୍ନକୁ ଆଖିରେ ଆଖେଇ ଥିଲେ । ମାତ୍ର ଦିନେ ହଠାତ୍ ଶୋଇ ପଡ଼ିଲେ । ସେଦିନ ଥିଲା, ୧୯୯୭ ଅପ୍ରେଲ ୧୭ ତାରିଖ । ଚିର ନିଦ୍ରା ତାଙ୍କୁ କୋଳାୟିତ କଲା । ସାରାବିଶ୍ୱର

ନେତୃବୃନ୍ଦ ଲୁହ ଝରେଇ ଥିଲେ ବିଜୁବାବୁଙ୍କ ପାଇଁ । ସମସ୍ତେ ସ୍ତବ୍ଧ ହୋଇଯାଇଥିଲେ । ମାତ୍ର ନିଦ ତାଙ୍କର ସ୍ୱପ୍ନକୁ ଭାଙ୍ଗି ପାରେନି, ନିଜର ପୁତ୍ର ନବୀନବାବୁ ତାଙ୍କ ସ୍ୱପ୍ନକୁ ଚଳାୟମାନ କରିବାରେ ସତତ ଚେଷ୍ଟିତ ।

ବିଜୁବାବୁଙ୍କର ସବୁଠୁ ଭଲ ଗୁଣ ଥିଲା, ସେ ସର୍ବଦା ସତ୍ୟବାଦୀ ଥିଲେ । ରୋକ୍‌ଠୋକ୍ କଥା, ରୋକ୍‌ଠୋକ୍ କାମ ତାଙ୍କୁ ଭଲ ଲାଗେ ଏବଂ ସେହି ନିର୍ଦ୍ଦେଶ ହିଁ ସେ ଦେଇଥାନ୍ତି । ତଳସ୍ତରର ଚାକରବାକର, ଚାଷୀ, ମୂଲିଆଠାରୁ ଆରମ୍ଭ କରି ବିଶ୍ୱର ଟାଣୁଆ ନେତୃବୃନ୍ଦ ପର୍ଯ୍ୟନ୍ତ କର୍ମର ମୂଲ୍ୟାଙ୍କନ କରି ସମ୍ମାନ ଦେବାରେ ସେ କାହାକୁ ପାତର ଅନ୍ତର କରୁନଥିଲେ । ତେଣୁ ସେ ନିରପେକ୍ଷ ।

ଆଞ୍ଚଳିକ ବୈଷମ୍ୟତା ତାଙ୍କୁ ଆଦୌ ସ୍ପୃହଣୀୟ ଲାଗୁନଥିଲା । ସେ କହିଥିଲେ, 'ଜାତୀୟ ତଥା ଆନ୍ତର୍ଜାତୀୟ ସମସ୍ତ ସମସ୍ୟା, ଅର୍ଥନୀତି ହେଉ କିମ୍ବା ଅନ୍ୟାନ୍ୟ ସମସ୍ୟା ହେଉ ଏ ସବୁର ଆଲୋଚନା କଲାବେଳେ ସାଧାରଣତଃ ଦୃଷ୍ଟି ଆଢୁଆଳରେ ରହିଯାଉଥିବା କେତେକ ବିଷୟରେ ସଚେତନ ହେବା ଆବଶ୍ୟକ । ଦେଶର ଯୋଜନା ପ୍ରଣୟନ କଲାବେଳେ ଆଞ୍ଚଳିକ ଉନ୍ନୟନର ସମତା ରକ୍ଷା ପ୍ରତି ଆମକୁ ଅଗ୍ରାଧିକାର ଦେବାକୁ ହେବ ।

ପ୍ରାକୃତିକ ବିଭବର ଉପଯୁକ୍ତ ବିନିଯୋଗ ପାଇଁ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା ନ ହୋଇପାରିଲେ ଅଥବା ଉନ୍ନତ ଯୋଗାଯୋଗ ବ୍ୟବସ୍ଥାର ଅଭାବଯୋଗୁଁ କେତେକ ଅଞ୍ଚଳର ଅଧିବାସୀଙ୍କୁ ଏହି ସଂପଦର ସୁଫଳ ନ ମିଳିଲେ ବା ସମୃଦ୍ଧ ଓ ଉନ୍ନତ ରାଜ୍ୟଗୁଡ଼ିକର ସୁବିଧା ଓ ଉତ୍ପାଦନର ଭିତ୍ତିଭୂମି ସହ ପଛୁଆ ରାଜ୍ୟଗୁଡ଼ିକ ତୁଳନୀୟ ହୋଇନଥିବାରୁ ସେଗୁଡ଼ିକର ଉନ୍ନୟନ ଉପେକ୍ଷିତ ହେଲେ ଭବିଷ୍ୟତରେ ରାଷ୍ଟ୍ରର ସଂହତି ଓ ଏକତା ବିପର୍ଯ୍ୟସ୍ତ ହେବ ।'

ବିଜୁବାବୁ ଥିଲେ ଦୂରଦ୍ରଷ୍ଟା । ସ୍ରଷ୍ଟାଙ୍କର ବିଚିତ୍ର ନିର୍ମାଣ, ନେତୃବୃନ୍ଦମାନଙ୍କରେ ବିଶ୍ୱର ଅଗ୍ରଗଣ୍ୟ । ଅନେକ କହନ୍ତି ଝଡ଼ର ଇଗଲ୍ କିନ୍ତୁ ସେ ଥିଲେ ଶାନ୍ତିର କପୋତ ପକ୍ଷୀ ରୂପୀ ପାଇଲଟ୍ । ସେ ହିଁ ଠିକ୍ ଉଡୁଥିଲେ । ଉଡ଼ି ଜାଣିଥିଲେ । ଉଡ଼ିବାରେ ସ୍ଥିତ ପ୍ରଜ୍ଞତାର ଭାଷାରେ ସେ ଥିଲେ ସ୍ଥିର । ସେ ଓଡ଼ିଶାର ନବନିର୍ମାତା, କଳିଙ୍ଗର ଦ୍ୱିତୀୟ ଖାରବେଳ । ହୃଦୟ ହୃଦୟରେ ବିଜୁବାବୁ ଥିଲେ ହୃଦୟ ଚିହ୍ନା ମଣିଷ । ପରବ୍ରହ୍ମ ପରମେଶ୍ୱର ତାଙ୍କୁ ଆନନ୍ଦରେ ରଖିଥାନ୍ତୁ ।

ସାମ୍ବାଦିକ
ବାରିପଦା

---

# କଳିଙ୍ଗର ଶ୍ରେଷ୍ଠ କର୍ମବୀର

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

କଳିଙ୍ଗର ଶ୍ରେଷ୍ଠ କର୍ମବୀର
ପ୍ରଚଣ୍ଡ ଦୁର୍ବାର ସାହାସୀ
ତୁମେ ଥିଲ ବିଜୁବାବୁ
କବି ନପାରିବ ବର୍ଣ୍ଣି ତୁମ କୀର୍ତ୍ତିରାଜି ।
ପାରାଦୀପ ବନ୍ଦର ଓ ସୁନାବେଡ଼ା ମିଗ୍ କାରଖାନା
ସବୁଠି ଉଡୁଛି ତୁମର ସେ କୀରତିର ବାନା
ରାଜଧାନୀ ଗାଉଅଛି ତୁମରି କୀରତି
କାନ୍ଦୁଅଛି କଟକ ନଗରୀ
ଚଉଦ୍ୱାର ଉଚ୍ଚେ କାନ୍ଦେ
କାନ୍ଦେ ପୁଣି ମହୋଦଧି ।
କୋଟି କୋଟି ଜନତାର ହୃଦ ସିଂହାସନେ
ରହିଥିଲ, ରହିଅଛ, ରହିଥିବ ସବୁଦିନେ
ମରି ତୁମେ ହୋଇଛ ଅମର
ସରଗରେ ଥାଇ ଦେବ
ଆଲୋକ ଦେଖାଅ
ଏ ଜାତି ଯେପରି ନହୁଡ଼ିବ ପଥ ।

ବିଧାୟକ, ମାହାଙ୍ଗା
କ୍ୱାଟର ନଂ-୧୭/୧, ୟୁନିଟ୍-୪, ଭୁବନେଶ୍ୱର



୧୯୬୧ ମସିହାରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ଏ.ଏନ୍. ଖୋସ୍ଲା, ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ ଭାବେ ପଦ ଓ ଗୋପନୀୟତାର ଶପଥ ପାଠ କରାଉଛନ୍ତି ।



ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କ ସହ ବିଜୁ ପଟ୍ଟନାୟକ



ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ସହ ବିଜୁ ପଟ୍ଟନାୟକ



୧୯୯୦ ମସିହାରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ ଭାବେ ପଦ ଓ ଗୋପନୀୟତାର ଶପଥ ପାଠ କରାଉଛନ୍ତି ।



ପିତାଙ୍କ ସହ ବିଜୁ ପଟ୍ଟନାୟକ



ସହଧର୍ମିଣୀ ଜ୍ଞାନ ପଟ୍ଟନାୟକଙ୍କ ସହ
ବିଜୁ ପଟ୍ଟନାୟକ



କ୍ରିକେଟ୍ ଖେଳ ସମୟରେ ବିଜୁ ପଟ୍ଟନାୟକ



ସାଇକେଲରେ ବିଜୁ ପଟ୍ଟନାୟକଙ୍କ ପେଶାୱାର ଯାତ୍ରା

# ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ

ଅଧ୍ୟାପକ ପବିତ୍ର ମୋହନ ବାରିକ

ଓଡ଼ିଶାର ତତ୍‌କାଳୀନ ଛବିଶ ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ବଲାଙ୍ଗିର-ପାଟଣା ଅନ୍ୟତମ ଶକ୍ତିଶାଳୀ ତଥା ସମୃଦ୍ଧଶାଳୀ ଦେଶୀୟ ରାଜ୍ୟ ରୂପେ ଖ୍ୟାତି ଅର୍ଜନ କରିଥିଲା । ଏହାର ଶେଷ ତଥା ୩୩ତମ ଚୌହାନ ବଂଶୀୟ ରାଜାଥିଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓ । ବଲାଙ୍ଗୀର-ପାଟଣା ରାଜସିଂହାସନ ଅଳଙ୍କୃତ କରିଥିବା ନରପତିମାନଙ୍କ ମଧ୍ୟରେ ସେଥିଲେ ସ୍ୱର୍ଦ୍ଧିତ ସ୍ୱାଭିମାନୀ ବ୍ୟକ୍ତିତ୍ୱ, ନିଷ୍କଳଙ୍କ ଚରିତ୍ର, ଆଦର୍ଶ ପ୍ରଜାନୁରଞ୍ଜନ ସୁଶାସକ, ଦୂରଦର୍ଶୀ, ଅଭିଜ୍ଞ, ମହାନୁଭବୀ ଓ କଳା ସାହିତ୍ୟ ଏବଂ ସଂସ୍କୃତିର ଜଣେ ସତୀର୍ଥ ପୃଷ୍ଠପୋଷକ । ମାନବିକ ମୂଲ୍ୟବୋଧ ଓ ଉତ୍ତମ ରାଜନୀତିରେ ବିଶ୍ୱାସ ରଖିଥିବା ଜଣେ ବାସ୍ତବବାଦୀ ରାଜନୀତିଜ୍ଞ । ଅମାୟିକ ବ୍ୟବହାର, ନିଷ୍କପଟ ହୃଦୟ ଓ ମିଷ୍ଟଭାଷୀତା ପାଇଁ ସେ ସମସ୍ତଙ୍କର ସମ୍ମାନର ପାତ୍ର ଥିଲେ । ଉଭୟ ରାଜତନ୍ତ୍ର ଓ ଗଣତନ୍ତ୍ର ଶାସନର କ୍ଷମତାକୁ କେବେ ସେ ଅପବ୍ୟବହାର କରି ନଥିଲେ । ଉଚ୍ଚରାଜବଂଶ, ଅସୀମ କ୍ଷମତା, ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ବଢ଼ି ଆସିଥିବାର ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ବୃଥା ଆଭିଜାତ୍ୟ, ଗର୍ବ ଓ ଅହଙ୍କାର କେବେ ସ୍ପର୍ଶ କରିନଥିଲା ।



ରାଜେନ୍ଦ୍ର ନାରାୟଣ ୧୯୧୨ ମସିହା ମାର୍ଚ୍ଚ ମାସ ୩୧ ତାରିଖ ଦିନ ଷଢ଼େଇ କଳା ରାଜବଂଶର ଆଦିତ୍ୟ ପ୍ରସାଦସିଂହ ଓ ପଦ୍ମିନୀ କୁମାରୀଙ୍କ କୋଳମଣ୍ଡନ କରି ଭୂମିଷ୍ଠ ହୋଇଥିଲେ । ପରବର୍ତ୍ତୀ ସମୟରେ ବଲାଙ୍ଗୀର-ପାଟଣାର ମହାରାଜା ପୃଥ୍ୱୀରାଜ ସିଂହଦେଓ ନିଃସନ୍ତାନ ଥିବାରୁ ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ବିଦ୍ୟା ଅଧ୍ୟୟନ ନିମନ୍ତେ ଆଜମୀରର ମେୟ କଲେଜରେ ତାଙ୍କର ନାମ ଲେଖାଯାଇଥିଲା । ହଜାରିବାଗ ଓ ମୁଙ୍ଗେରରେ ରାଜକାର୍ଯ୍ୟ ପରିଚାଳନା ସମ୍ବନ୍ଧୀୟ ଶିକ୍ଷାଲାଭ କରିଥିଲେ । ରାଜେନ୍ଦ୍ର ନାରାୟଣ ସିଂହଦେଓ କୋଡ଼ିଏ ବର୍ଷ ବୟସରେ ପାତିଆଲା ମହାରାଜାଙ୍କ କନ୍ୟା କୈଳାସ କୁମାରୀଙ୍କୁ ବିବାହ କରିଥିଲେ ଓ ଏକୋଇଶ ବର୍ଷ ବୟସରେ ୧୯୩୩ ମସିହାରୁ ବଲାଙ୍ଗୀର-ପାଟଣା ଦେଶୀୟ ରାଜ୍ୟର ଶାସନ, କଳା, ଶିକ୍ଷା, ସ୍ୱାସ୍ଥ୍ୟ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରିଯାଇଛନ୍ତି । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ରାଜ୍ୟ ଭାର ଗ୍ରହଣ କଲାପରେ ଚାରିବର୍ଷ ମଧ୍ୟରେ ନିର୍ଭୁଲ ଭାବରେ ରାଜ୍ୟର ସମସ୍ତ ଜମି ବନ୍ଦୋବସ୍ତ କରାଇଥିଲେ । ପ୍ରଜାସତ୍ୱ ଓ ଠିକାଦାରୀ ଆଇନ ପ୍ରଣୟନ କରି ରାଜ୍ୟର ଅଶେଷ କଲ୍ୟାଣ ସାଧନ କରିଥିଲେ । ଶିକ୍ଷାର ଉନ୍ନତି ପାଇଁ ମହାରାଜା ବିଶେଷ ଗୁରୁତ୍ୱ ପ୍ରଦାନ କରିଥିଲେ । ବଲାଙ୍ଗୀର-ପାଟଣା ଗଡ଼ଜାତ ରାଜ୍ୟରେ ସେ ଅନେକ ପ୍ରାଥମିକ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ତାଙ୍କ ରାଜତ୍ୱ ସମୟରେ ପାଟଣାଗଡ଼ ଓ ଟିଟିଲାଗଡ଼ଠାରେ ଉଚ୍ଚବିଦ୍ୟାଳୟ ସ୍ଥାପନ କରାଯାଇଥିଲା । ଏହି ପଦକ୍ଷେପ ମହାରାଜାଙ୍କର ଶିକ୍ଷା ପ୍ରତି ଥିବା ଆନ୍ତରିକତାର ସ୍ପଷ୍ଟ ପ୍ରମାଣ ଦିଏ । ମହାରାଜା ଉଚ୍ଚଶିକ୍ଷାର ବିକାଶ ପାଇଁ ୧୯୪୪ ମସିହାରେ ଏକ ଐତିହାସିକ ନିଷ୍ପତ୍ତି ନେଇ ବଲାଙ୍ଗୀର ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ ସମୟରେ ଏହି ଶିକ୍ଷାନୁଷ୍ଠାନ ରାଜେନ୍ଦ୍ର କଲେଜ ନାମରେ ନାମିତ ହୋଇ ଉଚ୍ଚଶିକ୍ଷା କ୍ଷେତ୍ରରେ ବହୁ ସୁନାମର ଅଧିକାରୀ ହୋଇପାରିଛି । ମହାରାଜାଙ୍କ ଉଦ୍ୟମକ୍ରମେ ଶିକ୍ଷକମାନଙ୍କୁ ତାଲିମ ଦେବା ଉଦ୍ଦେଶ୍ୟରେ ୧୯୪୬ ମସିହାରେ ବଲାଙ୍ଗୀରଠାରେ ଶିକ୍ଷକ-ତାଲିମ କେନ୍ଦ୍ର ସ୍ଥାପନ କରାଯାଇଥିଲା । ମହାରାଜା ତାଙ୍କ ମହାନୁଭବତାର ପରିଚୟ ଦେବାକୁ ଯାଇ ମେଧାବୀ ଛାତ୍ର ଓ ହରିଜନ ଛାତ୍ରମାନଙ୍କ ପାଇଁ ସ୍ୱତନ୍ତ୍ର ଛାତ୍ର ବୃତ୍ତିର ବ୍ୟବସ୍ଥା କରିଥିଲେ । ଅନାଥ ଛାତ୍ରମାନଙ୍କ ପ୍ରତି ମହାରାଜା ଅତ୍ୟନ୍ତ ସହନଶୀଳ ତଥା ଦୟାଶୀଳ ଥିଲେ । ସେମାନଙ୍କର ସମସ୍ତ ଖର୍ଚ୍ଚ ତାଙ୍କ ରାଜ ଦରବାର ବହନ

କରୁଥିଲା । ଅନାଥ ଛାତ୍ରମାନଙ୍କର ଆଶ୍ରୟ ପାଇଁ 'ଅନ୍ନପୂର୍ଣ୍ଣା ଅନାଥାଶ୍ରମ'ରେ ସୁବ୍ୟବସ୍ଥା କରାଯାଇଥିଲା । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଜାତିପ୍ରଥାର ବିରୋଧୀ ଥିଲେ । ଭେଦ-ଭାବପୂର୍ଣ୍ଣ ଜାତିପ୍ରଥାକୁ ଦୂର କରିବା ପାଇଁ ସେ କେତୋଟି ଦୃଷ୍ଟାନ୍ତମୂଳକ ପଦକ୍ଷେପ ଗ୍ରହଣ କରିଥିଲେ । ଜାତିଗତ ପାର୍ଥକ୍ୟ ଦୂର କରିବା ନିମନ୍ତେ ସବର୍ଣ୍ଣ-ଅସବର୍ଣ୍ଣ ସମସ୍ତ ଛାତ୍ରଙ୍କୁ ଗୋଟିଏ ବିଦ୍ୟାଳୟରେ ଅଧ୍ୟୟନ କରିବା ପାଇଁ ରାଜା ଆଦେଶ ଜାରି କରିଥିଲେ । ଏହି ପଦକ୍ଷେପ ମହାରାଜାଙ୍କର ଦୂରଦୃଷ୍ଟିର ପରିଚୟ ପ୍ରଦାନ କରେ । ହରିଜନ-ଆଦିବାସୀ ଛାତ୍ରମାନଙ୍କର ସଞ୍ଜ୍ଞା ପରିବର୍ତ୍ତନ କରାଯାଇ ନନ୍ଦ, ମହାନନ୍ଦ, ପାଣିଗ୍ରାହୀ, ଦୀପ ଇତ୍ୟାଦି ଲେଖିବାକୁ ଅନୁମତି ଦିଆଯାଇଥିଲା ।

କଳାର ଅଭିବୃଦ୍ଧି ନିମନ୍ତେ ପାଟଣା ରାଜ୍ୟରେ 'କୋଶଳ-କଳାମଣ୍ଡଳ' ନାମକ ଏକ ସାଂସ୍କୃତିକ ଅନୁଷ୍ଠାନର ମହାରାଜା ମୁଖ୍ୟ ପୃଷ୍ଠପୋଷକ ରୂପେ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ନୃତ୍ୟ, ଗୀତ, ସଂଗୀତ, କ୍ରୀଡ଼ା ଓ ସାହିତ୍ୟ କ୍ଷେତ୍ରରେ କୋଶଳ କଳାମଣ୍ଡଳ ଉତ୍ସାହପ୍ରଦ କାର୍ଯ୍ୟକ୍ରମ ଗ୍ରହଣ କରି ଆସିଥିଲା । କଳାମଣ୍ଡଳର ମୁଖପତ୍ର ରୂପେ 'ଚତୁରଙ୍ଗ' ନାମକ ସାହିତ୍ୟ ପତ୍ରିକା ପ୍ରତ୍ୟେକ ମାସରେ ମହାରାଜାଙ୍କର ପ୍ରଚ୍ଛନ୍ନ ଅବଦାନ ଦ୍ୱାରା ପ୍ରକାଶିତ ହୋଇ ଆସୁଥିଲା । 'ଘୋଷଣା' ନାମକ ଅନ୍ୟ ଏକ ପତ୍ରିକା ତାଙ୍କ ଦରବାରରୁ ମଧ୍ୟ ନିୟମିତ ପ୍ରକାଶିତ ହେଉଥିଲା । ତାଙ୍କ ଶୈଳଶ୍ରୀ ରାଜପ୍ରାସାଦ ମଧ୍ୟରେ ଏକ ବୃହତ୍ ପୁସ୍ତକ ଭଣ୍ଡାର ଥିଲା । ଏଥିରେ ଦେଶ-ବିଦେଶର ବିଭିନ୍ନ ଭାଷାର ସାହିତ୍ୟ, ସଂସ୍କୃତି, ଐତିହ୍ୟ, ଇତିହାସ, ଓ ଧର୍ମ ଉପରେ ଆଧାରିତ ପୁସ୍ତକମାନ ଥିଲା । ପରବର୍ତ୍ତୀ ସମୟରେ ଏହି ପୁସ୍ତକ ରାଜେନ୍ଦ୍ର କଲେଜ ପାଠାଗାରକୁ ଦାନ କରାଯାଇ ଥିଲା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ମହାରାଜାଙ୍କର ସଂସ୍କୃତି ପ୍ରତି ଥିଲା ଅସୀମ ଦୁର୍ବଳତା । ସେ ଥିଲେ ଶିକ୍ଷା ଓ ସାହିତ୍ୟ ପ୍ରେମୀ ।

ପୁରାତନ ଐତିହ୍ୟର ସୁରକ୍ଷା ଓ ଅତୀତ ଗୌରବମୟ ଇତିହାସର ଗବେଷଣା ପାଇଁ ସେ ନିଜ ରାଜ୍ୟରେ 'ପ୍ରତ୍ନତତ୍ତ୍ୱ ବିଭାଗ' ଓ 'ଐତିହାସିକ ଅନୁସନ୍ଧାନ ସୋସାଇଟି' ପ୍ରତିଷ୍ଠା କରିଥିଲେ । ସୁନାମଧନ୍ୟ ଐତିହାସିକ କେଦାରନାଥ ମହାପାତ୍ର ଓ ପୂର୍ଣ୍ଣଚନ୍ଦ୍ର ରଥ ତାଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ ।

ନାରୀମାନଙ୍କ ମଧ୍ୟରେ ଶିକ୍ଷା ଓ ସଂସ୍କୃତିର ବିକାଶ ପାଇଁ ତାଙ୍କ ଦ୍ୱାରା ଏକ ମହିଳା କ୍ଳବ୍ ବଲାଙ୍ଗୀରରେ ସ୍ଥାପନ କରାଯାଇଥିଲା । ନାରୀମାନଙ୍କର ସ୍ୱାସ୍ଥ୍ୟର ଉନ୍ନତି, ସେବାଶୁଶ୍ରୁଷା ପାଇଁ ସୁଖ ପ୍ରସବ ଉଦ୍ଦେଶ୍ୟରେ ସେ ମାତୃମଙ୍ଗଳ କେନ୍ଦ୍ର ସ୍ଥାପନ କରିଥିଲେ । ମାତୃଜାତି ପାଇଁ ମାତୃମଙ୍ଗଳ କେନ୍ଦ୍ରକୁ ତାଙ୍କ ମହାରାଣୀ କୈଳାସ କୁମାରୀ ଦେବୀ ଉଦ୍‌ଘାଟନ କରିଥିଲେ । ସ୍ୱାଧୀନତା ପରେ ପ୍ରତ୍ୟକ୍ଷ ରାଜନୀତିରେ ନାରୀମାନଙ୍କ ଯୋଗଦାନକୁ ଉତ୍ସାହିତ କରିଥିଲେ । ରାଜେନ୍ଦ୍ର ନାରାୟଣ ସିଂହଦେଓ, ତେଣୁ ତାଙ୍କ ଭଉଣୀ ଢେଙ୍କାନାଳ ରାଜମାତା ରତ୍ନପ୍ରଭା



ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଦ୍ୱାରା ନିର୍ମିତ ଶୈଳଶ୍ରୀ ରାଜପ୍ରାସାଦ ମଧ୍ୟରେ ନୀଳକଣ୍ଠେଶ୍ୱର ମନ୍ଦିର

ଦେବୀ ଏବଂ ତିଗିରିଆ ରାଜମାତା ରାସମଞ୍ଜରୀ ଦେବୀ ମହାରାଜାଙ୍କ ଦ୍ୱାରା ଅନୁପ୍ରାଣୀତ ହୋଇ ରାଜନୀତିରେ ଅଂଶ ଗ୍ରହଣ କରିଥିଲେ । ପ୍ରଜାମାନଙ୍କର ସ୍ୱାସ୍ଥ୍ୟର ଉନ୍ନତି ନିମନ୍ତେ ତାଙ୍କ ସମୟରେ ଅନେକ ସ୍ଥାନରେ ସ୍ୱାସ୍ଥ୍ୟ ଅନୁଷ୍ଠାନମାନ ପ୍ରତିଷ୍ଠା କରାଯାଇଥିଲା । ୧୯୩୭ ମସିହାରେ ସେ ବଲାଙ୍ଗୀର ଚିକିତ୍ସାଳୟରେ ରଞ୍ଜନ-ରଶ୍ମୀ ସ୍ଥାପନ କରିଥିଲେ । ସ୍ୱାଧୀନତା ପରେ ରଞ୍ଜନ ରଶ୍ମୀ ମେସିନକୁ କଟକ ସ୍ଥାନାନ୍ତରିତ କରାଯାଇଥିଲା । ତାଙ୍କ ଦ୍ୱାରା ବଲାଙ୍ଗୀରରେ ଏକ ସ୍ୱତନ୍ତ୍ର ଚକ୍ଷୁ ଚିକିତ୍ସାଳୟ ମଧ୍ୟ ସ୍ଥାପନ କରାଯିବା ସହିତ ଅଭିଜ୍ଞ ଚିକିତ୍ସକମାନଙ୍କୁ ସେଠାକୁ ଅଣାଯାଇଥିଲା । ପ୍ରଜାମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ପ୍ରତି ମହାରାଜା ଅଧିକ ଯତ୍ନଶୀଳ ଥିଲେ । ବଲାଙ୍ଗୀର ସହର ମଧ୍ୟ ଭାଗରେ ରାଜେନ୍ଦ୍ର ନାରାୟଣ ଏକ ଆୟୁର୍ବେଦିକ ଚିକିତ୍ସାଳୟ ସ୍ଥାପନ କରିଥିଲେ । ଉକ୍ତ ଚିକିତ୍ସାଳୟକୁ ରାମକୃଷ୍ଣ ପରମହଂସ ଦେବଙ୍କ ପତ୍ନୀ ଶାରଦା ଦେବୀଙ୍କ ନାମାନୁସାରେ ଶାରଦେଶ୍ୱରୀ ରଖାଯାଇଥିଲା । ମହାରାଜାଙ୍କ ଦ୍ୱାରା ତାଙ୍କ ରାଜତ୍ୱ ସମୟରେ ଏକ ବୃହତ୍ ଗୋପାଳନ କେନ୍ଦ୍ର ସ୍ଥାପନ କରାଯାଇଥିଲା । ଏଥିରେ ଉନ୍ନତ ଧରଣର ଗାଈ ଓ ମଇଁଷିମାନଙ୍କୁ ରଖି ବଲାଙ୍ଗୀର ସହରକୁ ଦୁଗ୍ଧ ଯୋଗାଇ ଦିଆଯାଉଥିଲା । ମହାରାଜା ଏକ ପଶୁ ଚିକିତ୍ସାଳୟ ମଧ୍ୟ ବଲାଙ୍ଗୀର ସହରରେ ସ୍ଥାପନ କରିଥିଲେ ।

ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଜଣେ ଧର୍ମପ୍ରାଣ ଓ ନ୍ୟାୟ ପରାୟଣ ବ୍ୟକ୍ତି ଥିଲେ । ନିଜ ମାତା କିଶୋରୀ ମୋହନ ଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ରାଜପ୍ରସାଦ ମଧ୍ୟରେ ଦୁଇ ପୁଷ୍କରିଣୀ ମଧ୍ୟଭାଗରେ ଶ୍ରୀନୀଳକଣ୍ଠେଶ୍ୱର ଓ ଶ୍ରୀରଘୁନାଥ ମନ୍ଦିର ପ୍ରତିଷ୍ଠା କରିଥିଲେ । ଆଧ୍ୟାତ୍ମିକ ଚିନ୍ତାଧାରା ଓ ଧାର୍ମିକ ବ୍ୟବସ୍ଥା ପ୍ରତି ମହାରାଜଙ୍କର ପ୍ରବଳ ଆଗ୍ରହ ଥିଲା । ମହାରାଜା ୧୯୩୯ ଖ୍ରୀଷ୍ଟାବ୍ଦରେ ସପ୍ତ ଦିବସ ବ୍ୟାପି 'ବିଷ୍ଣୁ ମହାଯଜ୍ଞ' ଆରମ୍ଭ କରିଥିଲେ । ଏହି ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ରାଜନୀତି, କଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିବା ସଂଗେସଂଗେ ସମାଜ ସଂସ୍କାରରେ ମଧ୍ୟ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ପଣ୍ଡିତ ଅର୍ଜୁନ ହୋତାଙ୍କ ପରାମର୍ଶକ୍ରମେ ଅତି ଚତୁରତାର ସହିତ ପର୍ଯ୍ୟାୟକ୍ରମେ

ଦେବୀ ମନ୍ଦିରମାନଙ୍କରୁ ନିର୍ମମ ପଶୁବଳି ପ୍ରଥା ପ୍ରାୟତଃ ତାଙ୍କ ଦ୍ୱାରା ଉଚ୍ଛେଦ କରାଯାଇପାରିଥିଲା । ୧୯୩୯ ମସିହାରେ ପଣ୍ଡିତ ସମ୍ମିଳନୀ ମହାରାଜାଙ୍କ ସଭାପତିତ୍ୱରେ ଆୟୋଜନ କରାଯାଇଥିଲା । ପାଞ୍ଚ ହଜାରରୁ ଊର୍ଦ୍ଧ୍ୱ ପଣ୍ଡିତ ତଥା ବିଦ୍ୱାନ ବ୍ୟକ୍ତି ଏଥିରେ ଅଂଶ ଗ୍ରହଣ କରିଥିଲେ । ଆଲୋଚ୍ୟ ବାଲ୍ୟବିଧବା ବିବାହ ପ୍ରସଙ୍ଗକୁ କେନ୍ଦ୍ର କରି ପଣ୍ଡିତମାନଙ୍କ ମଧ୍ୟରେ ମତପାର୍ଥକ୍ୟ ପ୍ରକାଶ ପାଇଥାଏ । ଯଦି ଯୁବତୀ ବିବାହ ପ୍ରଥା ପ୍ରଚଳନ କରାଯାଏ ତାହାହେଲେ ବାଲ୍ୟବିଧବାର ପ୍ରଶ୍ନ ଉଠୁନାହିଁ । ଉକ୍ତ ସମ୍ମିଳନୀରେ ବାଲ୍ୟବିବାହ ପ୍ରଥା ଉଚ୍ଛେଦ କରିବା ଉଦ୍ଦେଶ୍ୟରେ ମହାରାଜା ଯୁବତୀ ବିବାହ ପ୍ରସ୍ତାବ ଆଗତ କରିଥିଲେ ଏବଂ ଏହା ସର୍ବସମ୍ମତିକ୍ରମେ ଗ୍ରହଣ କରାଯାଇଥିଲା । ପ୍ରତି ବୁଧବାର ଓ ଶନିବାର ଦିନ ପ୍ରଜାମାନେ ଶୈଳଶ୍ରୀ ରାଜପ୍ରାସାଦରେ ସମବେତ ହୋଇ ନିଜ ଦୁଃଖ-ଦୁର୍ଦ୍ଦଶାର ବିମୋଚନ ନିମନ୍ତେ ମହାରାଜାଙ୍କୁ ଗୁହାରୀ କରୁଥିଲେ । ୧୯୩୬ ମସିହାରେ ନିଜ ଜନ୍ମ ଦିନ ଅବସରରେ ମହାରାଜା ବେଠି ଓ ବେଗାରି ପ୍ରଭୃତି ନିନ୍ଦନୀୟ ତଥା ଅଶୋଭନୀୟ ପ୍ରଥା ପ୍ରଜାମାନଙ୍କ ଉପରୁ ଉଠାଇ ଦେଇଥିଲେ । ହରିଜନମାନଙ୍କୁ ମନ୍ଦିରରେ ପ୍ରବେଶାଧିକାର ଦେବାପାଇଁ ସେ ମାନବିକ ଦୃଷ୍ଟିକୋଣରୁ ପ୍ରଶଂସନୀୟ ଉଦ୍ୟମ ଆରମ୍ଭ କରିଥିଲେ ।

ପୂର୍ବତନ ବଲାଙ୍ଗୀର-ପାଟଣା ଗଡ଼ଜାତ ରାଜ୍ୟରେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ରାଜତ୍ୱ ସମୟରେ ଏକ ସ୍ୱାଧୀନ ବିଚାର ବ୍ୟବସ୍ଥା ପ୍ରଚଳନ ଥିଲା । ତିନି ଜଣ ଅଭିଜ୍ଞ ବିଚାରପତିଙ୍କୁ ନେଇ ବଲାଙ୍ଗୀରରେ ଏକ ଉଚ୍ଚ ନ୍ୟାୟାଳୟ କାର୍ଯ୍ୟ କରୁଥିଲା । ଯାହାକି ସମଗ୍ର ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ବିରଳ । ମହାରାଜା କୃଷି ଓ କୃଷକମାନଙ୍କର ବିକାଶ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେଇଥିଲେ । ୧୯୩୯ ମସିହା ଫେବଅଆରୀ ୨୬ ତାରିଖରୁ ୧୦ ଦିନ ପର୍ଯ୍ୟନ୍ତ କୃଷିଜାତ ପଦାର୍ଥ ଓ ଗୃହପାଳିତ ପଶୁମାନଙ୍କର ଏକ ପ୍ରଦର୍ଶନୀ ବଲାଙ୍ଗୀରଠାରେ ଅନୁଷ୍ଠିତ ହୋଇଥିଲା । କୃଷି କ୍ଷେତ୍ରକୁ ଜଳସେଚନର ବ୍ୟବସ୍ଥା ପାଇଁ ଜଳଭଣ୍ଡାରଗୁଡ଼ିକର ଉନ୍ନତିବିଧାନ କରାଯାଇଥିଲା ମହାରାଜାଙ୍କ ରାଜତ୍ୱ ସମୟରେ । ବଲାଙ୍ଗୀର-ପାଟଣା ଦେଶୀୟ ରାଜ୍ୟରେ କୁଟୀର ଶିଳ୍ପର ବିକାଶ ପାଇଁ ମହାରାଜା ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । କୁଟୀର ଶିଳ୍ପରେ ତାଲିମ ଗ୍ରହଣ କରିବା ପାଇଁ ରାଜ୍ୟ ପକ୍ଷରୁ କେତେ ଜଣ ଶିକ୍ଷକଙ୍କୁ ରାଜ୍ୟ ବାହାରକୁ ପ୍ରେରଣ କରାଯାଇଥିଲା । ତାଲିମ ଗ୍ରହଣ କଲାପରେ ଉକ୍ତ ଶିକ୍ଷକମାନେ ନିଜ-ନିଜ ବିଦ୍ୟାଳୟରେ ଛାତ୍ରମାନଙ୍କୁ ବାଉଁଶ, ତାଳପତ୍ର, ବେଣା, ମାଟି ଓ କାଗଜ ମଣ୍ଡରେ ବିଭିନ୍ନ ପ୍ରକାର ଦ୍ରବ୍ୟ ପ୍ରସ୍ତୁତ କରିବାକୁ ଶିକ୍ଷା ଦେଉଥିଲେ । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଜଣେ କ୍ରୀଡ଼ା ପ୍ରେମୀ ଥିଲେ । ତାଙ୍କ ପୃଷ୍ଠପୋଷକତାରେ 'ରମାଇ ଫୁଟବଲ ଟୁର୍ଣ୍ଣାମେଣ୍ଟ' ଆୟୋଜିତ ହେଉଥିଲା । ମହାରାଜା ନିଜେ ଟାଉନ୍‌ଟିମ୍‌ରେ ଖେଳି ନିଜ ଖେଳୁଆଡ଼ ମନୋଭାବର ପରିଚୟ ଦେଇଥିଲେ । ଅନ୍ୟ ଖେଳାଳିମାନଙ୍କ ସହିତ ଖେଳିବାକୁ ସେ କେବେ କୁଣ୍ଠାବୋଧ କରୁନଥିଲେ ।

ପ୍ରଫେସର ସି.ଆର୍.ଡ଼ି. ନାଇଡୁ ମହାରାଜାଙ୍କୁ ଯୋଗ ଓ ପ୍ରଣାୟାମ ଉପରେ ଶିକ୍ଷା ଦେଉଥିଲେ ।

ଅନ୍ୟ ଗଡ଼ଜାତ ଅଞ୍ଚଳରେ ଯେଉଁ ଭୟଙ୍କର ପ୍ରଜା ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାହାର କୌଣସି ବିଶେଷ ପ୍ରଭାବ ପାଟଣା ଗଡ଼ଜାତରେ ଦେଖିବାକୁ ମିଳିନଥିଲା । ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରଜା ଉତ୍ପୀଡ଼କ କିମ୍ବା ଅତ୍ୟାଚାରୀ ନଥିଲେ ଏବଂ ତାଙ୍କର ବ୍ୟକ୍ତିଗତ ଆମାୟିକ ବ୍ୟବହାର ତଥା ସ୍ୱଚ୍ଛ ଜୀବନ ପ୍ରଜା ଆନ୍ଦୋଳନକୁ ପ୍ରଶମିତ କରିବାରେ ସାହାଯ୍ୟ କରିଥିଲା । ଗଡ଼ଜାତ ମିଶ୍ରଣ ସମୟରେ ରାଜ୍ୟର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସେ ସର୍ବପ୍ରଥମେ ଦେଶୀୟ ରାଜ୍ୟ ବା ଗଡ଼ଜାତ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷରକରି, ବଲାଙ୍ଗୀର-ପାଟଣାକୁ ଓଡ଼ିଶା ପ୍ରଦେଶ ସହିତ ସମ୍ମିଶ୍ରଣ କରିଥିଲେ । ଶୃଙ୍ଖଳିତ ଓ ଦାୟିତ୍ୱ ସଂପନ୍ନ ଭାବରେ ପାଟଣା ରାଜ୍ୟର ଶାସନ କ୍ଷମତାକୁ ଓଡ଼ିଶା ରାଜ୍ୟ ସରକାରଙ୍କ ନିକଟରେ ଅର୍ପଣ କରିଥିଲେ । ସେ ଇଚ୍ଛା କରିଥିଲେ ଅନ୍ୟାନ୍ୟ ରାଜନ୍ୟବର୍ଗଙ୍କ ଭଳି ରାଜ୍ୟ ମିଶ୍ରଣ ସମୟରେ ରାଜକୋଷରୁ ବିପୁଳ ଅର୍ଥ ଆତ୍ମସାତ୍ କରିପାରିଥାନ୍ତେ, କିନ୍ତୁ ସାଧୁତା, ଉତ୍ତର ଦାୟିତ୍ୱ ଓ ଜନସାଧାରଣଙ୍କ ବୃହତ୍ତର ହିତ ଦୃଷ୍ଟିରୁ ସର୍ବାଧିକ ରାଜସ୍ୱ ଓଡ଼ିଶା ସରକାରଙ୍କୁ ପ୍ରଦାନ କରିଥିଲେ ।

ରାଜୁତ୍ୱା ଶାସନର ଅବସାନ ପରେ ପରବର୍ତ୍ତୀ ଓଡ଼ିଶାର ରାଜନୀତିରେ ସେ କେନ୍ଦ୍ରବିନ୍ଦୁ ଥିଲେ । ବିରୋଧୀ ଦଳ ନେତା, ଉପମୁଖ୍ୟମନ୍ତ୍ରୀ, ଅର୍ଥମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ସାଂସଦ ସଭ୍ୟ ରୂପେ ସେ ନିଜର ସାମ୍ବିଧାନିକ କର୍ତ୍ତବ୍ୟ ଓ ଦାୟିତ୍ୱକୁ ଶ୍ରଦ୍ଧା ଓ ସମ୍ମାନର ସହିତ ସଂପାଦିତ କରିଥିଲେ । ସେ ଥିଲେ ଓଡ଼ିଶା ରାଜନୀତିର ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱ । ଓଜସ୍ୱିନୀ ତଥା ଭାବ ଗର୍ଭକ ବକ୍ତୃତା, ଉପଯୁକ୍ତ ମାର୍ଗ ଓ ଶୈଳୀରେ ଓଡ଼ିଶାର ଦାବୀ ଉପସ୍ଥାପନ, ଆଦର୍ଶ ଶାସନ, ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ପ୍ରତି ସଚେତନତା, ସ୍ୱଭାବ-ସୁଲଭ ରାଜକୀୟ ବ୍ୟବହାର ପାଇଁ ସେ ସମସ୍ତଙ୍କର ହୃଦୟକୁ ଜୟ କରିପାରିଥିଲେ । ତାଙ୍କର ଜଣେ ସତୀର୍ଥ ସହଯୋଗୀ ତଥା ଅଭିଜ୍ଞ ରାଜନୀତିଜ୍ଞ ଓ ପ୍ରବୀଣ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ - 'ସେ ରାଜାମାନଙ୍କ ମଧ୍ୟରେ ଜଣେ ମନୁଷ୍ୟ ଏବଂ ମନୁଷ୍ୟମାନଙ୍କ ମଧ୍ୟରେ ଜଣେ ରାଜା ।' ୧୯୭୫ ମସିହା ଫେବୃଆରୀ ମାସ ୨୩ ତାରିଖରେ ଓଡ଼ିଶାବାସୀଙ୍କୁ ଶୋକ ସାଗରରେ ଭସାଇ ମହାନୁଭବ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏ ପାର୍ଥିବ ଜଗତରୁ ଚିର ଦିନ ପାଇଁ ବିଦାୟ ନେଲେ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪

# ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଆଇନ-ଏକ ଦୃଷ୍ଟିପାତ

ରବିନାରାୟଣ ପାଣି

ସ୍ୱାଧୀନତାର ୫୮ ବର୍ଷ ମଧ୍ୟରେ ଭାରତୀୟ ପାର୍ଲାମେଣ୍ଟରେ ଯେଉଁ କେତୋଟି ଯୁଗାନ୍ତକାରୀ, ଐତିହାସିକ ତଥା ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ନିଆଯାଇଛି, ସେଥିମଧ୍ୟରୁ କର୍ମସଂସ୍ଥାନ ବା ନିଯୁକ୍ତିକୁ ଆଇନଗତ ଭାବେ ଗ୍ୟାରେଣ୍ଟି ଦେବା ଉପଲକ୍ଷେ ଗତ ମୌସୁମୀ ଅଧିବେଶନରେ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଆଇନକୁ ପ୍ରଣୟନ କରିଥିବା ଅନ୍ୟତମ ।

ଗ୍ରାମାଞ୍ଚଳର ପ୍ରତ୍ୟେକ ପରିବାରର ଜଣେ ସକ୍ଷମ ବ୍ୟକ୍ତିକୁ ଅତିକମ୍‌ରେ ୧୦୦ ଦିନର ନିଶ୍ଚିତ କର୍ମନିଯୁକ୍ତି ଯୋଗାଇ ଦେବା ଏହି ଆଇନର ମୁଖ୍ୟଲକ୍ଷ୍ୟ । କିନ୍ତୁ ସେହି ସକ୍ଷମ ବ୍ୟକ୍ତି ଅଣକୁଶଳୀ ଶ୍ରମକାର୍ଯ୍ୟ କରିବାକୁ ଇଚ୍ଛୁକ ଥିବା ଆବଶ୍ୟକ । ପ୍ରଥମେ ଚଳିତ ବର୍ଷର ଶେଷ ୪ ମାସ ପାଇଁ ଏହି ଗ୍ରାମୀଣ ନିଯୁକ୍ତି ଗ୍ୟାରେଣ୍ଟି ଯୋଜନା ଦେଶର ୨୦୦ଟି ଜିଲ୍ଲାରେ କାର୍ଯ୍ୟକାରୀ ହେବାର ବ୍ୟବସ୍ଥା କରାଯାଇଛି । ଏହିସବୁ ଜିଲ୍ଲାରେ ଜାତୀୟ ଖାଦ୍ୟ ବିନିମୟରେ କାର୍ଯ୍ୟଯୋଜନା ଆଗରୁ କାର୍ଯ୍ୟକାରୀ ହେଉଥିଲା । ମାର୍ଚ୍ଚ ୨୦୦୬ଠାରୁ ସହରାଞ୍ଚଳ ଓ ନଗରାଞ୍ଚଳ ଜିଲ୍ଲାକୁ ବାଦ୍ ଦେଇ ସମସ୍ତ ଗ୍ରାମାଞ୍ଚଳରେ ଅର୍ଥାତ୍ ଗ୍ରାମ୍ୟ ଜିଲ୍ଲାମାନଙ୍କରେ ପରବର୍ତ୍ତୀ ୪ ବର୍ଷ ପାଇଁ ସରକାର ହାତକୁ ନେବେ । ଏହି ଯୋଜନା ପଞ୍ଚାୟତିରାଜ ଅନୁଷ୍ଠାନ ଦ୍ୱାରା କାର୍ଯ୍ୟକାରୀ ହେବ । ହିତାଧିକାରୀଙ୍କ ମଧ୍ୟରୁ ଏକ ତୃତୀୟାଂଶ ମହିଳା ରହିବେ । ଏହି କାର୍ଯ୍ୟକ୍ରମ ବ୍ୟୟବରାଦର ୯୦ ପ୍ରତିଶତ କେନ୍ଦ୍ର ସରକାର ବହନ କରିବେ ଓ ୧୦ ପ୍ରତିଶତ ରାଜ୍ୟ ସରକାର ବହନ କରିବେ । କାମ ଚାହିଁବାର ୧୫ ଦିନ ମଧ୍ୟରେ ୫ କି.ମି. ଦୂରତା ମଧ୍ୟରେ କାର୍ଯ୍ୟ ଯୋଗାଇ ଦିଆଯିବ । ପଞ୍ଜୀକୃତ ହିତାଧିକାରୀଙ୍କ ମଧ୍ୟରୁ ଯେ କାମ ନପାଇବ, ସେମାନଙ୍କୁ ବେକାରଭତ୍ତା ଦିଆଯିବ । କର୍ମରତ ହିତାଧିକାରୀ ଯଦି ମୃତ୍ୟୁବରଣ କରନ୍ତି, ତେବେ ଟ.୨୫୦୦୦ଙ୍କାର କ୍ଷତିପୂରଣ ଦିଆଯିବ । ଯେଉଁ ରାଜ୍ୟରେ କୃଷି ଶ୍ରମିକଙ୍କ ପାଇଁ ସର୍ବନିମ୍ନ ମଜୁରୀ ନିର୍ଦ୍ଧାରଣ ହୋଇଥିବ, ତାହା ହିଁ ଯୋଜନାର ମଜୁରୀ । କିନ୍ତୁ ସର୍ବନିମ୍ନ ମଜୁରୀ ୬୦ ଟଙ୍କା ହେବ । ଅତିକମ୍‌ରେ ୫୦ ଜଣ ଶ୍ରମିକ ପଞ୍ଜୀକୃତ ହେବେ ବୋଲି ଆଇନରେ ବ୍ୟବସ୍ଥା ଅଛି । ଦୈନିକ ମଜୁରୀ ସପ୍ତାହକୁ ଥରେ ଦିଆଯିବ କିମ୍ବା କାର୍ଯ୍ୟ ଆରମ୍ଭର ୧୫ ଦିନ ମଧ୍ୟରେ ଦିଆଯିବ ।

ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନା କିମ୍ବା ଜାତୀୟ ଖାଦ୍ୟ ବିନିମୟେ କର୍ମ ଯୋଜନାରେ ଯେଉଁ ବାର୍ଷିକ କର୍ମ ଖସଡ଼ା (Annual Action Plan) ପ୍ରସ୍ତୁତ ହୋଇଥିବ, ତାହା ହିଁ ଏହି ଯୋଜନାର କାର୍ଯ୍ୟ ଖସଡ଼ା ଭାବେ ପରିଗଣିତ ହେବ ।

କର୍ମନିଯୁକ୍ତି ପାଇଁ ଦରଖାସ୍ତ କରିଥିବା ଦରଖାସ୍ତକାରୀଙ୍କୁ ଯଦି କର୍ମଯୋଗାଇ ଦିଆଯାଇନଥାଏ, ତାହାହେଲେ ତାଙ୍କୁ ପ୍ରତ୍ୟେକ ଦିନ ପାଇଁ ବେକାରଭତ୍ତା ଦିଆଯିବାର ବ୍ୟବସ୍ଥା ଅଛି । ଏହି ଭତ୍ତା ପ୍ରଥମ ୩୦ ଦିନ ପାଇଁ ମଜୁରୀର ଏକ ଚତୁର୍ଥାଂଶରୁ କମ୍ ହେବ ନାହିଁ ଏବଂ ଆର୍ଥିକ ବର୍ଷର ଅନ୍ୟ ଦିନ ପାଇଁ ଦୈନିକ ମଜୁରୀରେ ଅର୍ଦ୍ଧେକରୁ କମ୍ ହୋଇନଥିବ । କିନ୍ତୁ ଦରଖାସ୍ତକାରୀ ଯଦି କାର୍ଯ୍ୟରେ ଯୋଗ ନ ଦିଅନ୍ତି କିମ୍ବା ପରିବାରର କୌଣସି ସାବାଳକକୁ କାର୍ଯ୍ୟକ୍ଷେତ୍ରକୁ ନପଠାନ୍ତି, ତେବେ ସେ ବେକାର ଭତ୍ତାରୁ ବଞ୍ଚିତ ହେବେ । ପ୍ରୋଗ୍ରାମ ଅଫିସର୍ ବେକାର ଭତ୍ତା ମଂଜୁର କରିପାରିବେ ଓ ଦେବେ । ଯଦି ସେ ନଦେଇ ପାରିବେ, ତେବେ ସେ ଜିଲ୍ଲା କୋ-ଅଡ଼ିନେଟର୍‌ଙ୍କୁ ଜଣାଇବେ ।

ଜାତୀୟ, ରାଜ୍ୟ ଓ ଜିଲ୍ଲାସ୍ତରରେ ଏହାର କାର୍ଯ୍ୟକାରିତା ପାଇଁ ପରିଷଦମାନ ଗଠନ କରାଯିବା ପାଇଁ ବ୍ୟବସ୍ଥା ଅଛି । ରାଜ୍ୟସ୍ତରୀୟ କମିଟିରେ ୧୫ ଜଣ ବେସରକାରୀ ସଭ୍ୟଙ୍କୁ ମନୋନୀତ କରିବା ପାଇଁ ବ୍ୟବସ୍ଥା ଅଛି । ସେମାନେ ପଞ୍ଚାୟତିରାଜ ସଂସ୍ଥା, ଶ୍ରମିକ ସଂଗଠନ ଓ ଅବହେଳିତ ବର୍ଗରୁ ହୋଇଥିବେ । ବେସରକାରୀ ସଭ୍ୟଙ୍କ ମଧ୍ୟରୁ ଏକ ତୃତୀୟାଂଶ ମହିଳା ରହିବେ । ପୁଣି ଏକ ତୃତୀୟାଂଶ ବେସରକାରୀ ସଭ୍ୟ ଆଦିବାସୀ, ହରିଜନ, ଓ.ବି.ସି. ଓ ସଂଖ୍ୟାଲଘୁ ହୋଇଥିବେ । ଜିଲ୍ଲାପାଳ କିମ୍ବା ଜିଲ୍ଲା ପଞ୍ଚାୟତରେ ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ ଜିଲ୍ଲା ପ୍ରୋଗ୍ରାମ କୋ-ଅଡ଼ିନେଟର୍ ଭାବେ କାର୍ଯ୍ୟ କରିବେ । ପଞ୍ଚାୟତ ଓ ପଞ୍ଚାୟତ ସମିତି ସ୍ତରରେ ସରକାର ଗୋଷ୍ଠୀ ଉନ୍ନୟନ ଅଧିକାରୀ ପଦବୀଠାରୁ ନ୍ୟୂନ ନଥିବା ଜଣେ ଅଧିକାରୀଙ୍କୁ ପ୍ରୋଗ୍ରାମ ଅଫିସର ଭାବେ ନିଯୁକ୍ତି ଦେବେ । ପ୍ରୋଗ୍ରାମ ଅଫିସର ପଞ୍ଚାୟତ ସମିତି ପାଇଁ ଯୋଜନା ପ୍ରସ୍ତୁତି କରିବେ । ଗ୍ରାମସଭା ଓ ୱାର୍ଡ଼ସଭା ପରାମର୍ଶରେ ଗ୍ରାମପଞ୍ଚାୟତ ପଞ୍ଚାୟତ ଅଞ୍ଚଳରେ ହେବାକୁ କାର୍ଯ୍ୟର ଚିହ୍ନଟ କରିବେ । ଯୋଜନାର ୧୫ ଶତାଂଶ କାର୍ଯ୍ୟ ଗ୍ରାମପଞ୍ଚାୟତ ମାଧ୍ୟମରେ ନିର୍ବାହ

ହେବ । ଯୋଜନାର ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ପାଇଁ ଜିଲ୍ଲା ପ୍ରୋଗ୍ରାମ କୋ-ଅର୍ଡ଼ିନେଟର୍ ଦାୟୀ ରହିବେ । ରାଜ୍ୟ ମହାଲେଖାଗାର ହିସାବର ଅଡିଟ୍ କରିପାରିବେ । ଏ ଆଇନର ଅବମାନନାକାରୀ ୧୦୦୦ ଟଙ୍କାର ଆର୍ଥିକ ଦଣ୍ଡରେ ଦଣ୍ଡିତ ହେବେ ।

ଜଳ ଅମଳ ଓ ସଂରକ୍ଷଣ ପ୍ରକଳ୍ପ, ଜଙ୍ଗଲ ସୃଷ୍ଟି ଆଦି ମରୁଡ଼ି ପ୍ରତିକାର ପ୍ରକଳ୍ପ, ଜଳସେଚନ କେନାଲ, କ୍ଷୁଦ୍ର ଜଳସେଚନ ପ୍ରକଳ୍ପ, ବନ୍ଧ, କଟା, ପୋଖରୀ ପୁନରୁଦ୍ଧାର, ଜମି ସମତଳ ଓ ଉନ୍ନତି, ବନ୍ୟା ପ୍ରତିରୋଧ ପ୍ରକଳ୍ପ, ଗ୍ରାମ୍ୟ ସଂଯୋଗୀକରଣ ରାସ୍ତା ଏହି ଯୋଜନାରେ କରାଯାଇପାରିବ ।

ପ୍ରତି ଗ୍ରାମର ପ୍ରତି ପରିବାରର ଜଣେ ସବଳ ଲୋକଙ୍କୁ ୫ ବର୍ଷ ପାଇଁ କର୍ମନିଯୁକ୍ତି ଦେଲେ ୧,୫୦,୦୦୦ କୋଟି ଟଙ୍କା ଖର୍ଚ୍ଚ କରାଯିବ । ଏହା ୨ ବର୍ଷରେ ପ୍ରତିରକ୍ଷା ବିଭାଗରେ ଖର୍ଚ୍ଚ ହୋଇଥାଏ । ଭାରତ ନିର୍ମାଣ ଯୋଜନାରେ କେନ୍ଦ୍ର ସରକାର ୧,୭୪,୦୦୦ କୋଟି ଟଙ୍କା ଖର୍ଚ୍ଚ କରିବାକୁ ଯାଉଛନ୍ତି । ଏହି କର୍ମସଂସ୍ଥାନ ଯୋଜନାର ଖର୍ଚ୍ଚ ଭାରତ ନିର୍ମାଣ ଯୋଜନାର ଏକ ଅଂଶ ।

କଳିଙ୍ଗ ବିହାର
ଭୁବନେଶ୍ୱର

# ଓଡ଼ିଶା ଖଣି ନିଗମକୁ ତିନିତାରକା ରପ୍ତାନୀ ଉଦ୍ୟୋଗର ମାନ୍ୟତା ପ୍ରଦାନ

ଓଡ଼ିଶା ଖଣି ନିଗମକୁ ଆଉ ଏକ ସଫଳତା ମିଳିଛି । ୧୯୫୬ ମସିହାରେ ଓଡ଼ିଶା ଖଣି ନିଗମ ଗଠନ ହେବାର ୫୦ ବର୍ଷ ପୂର୍ତ୍ତି ଅବସରରେ ନିଗମ ଚଳିତ ବର୍ଷ ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଅଛି । ନିଗମର ବଳିଷ୍ଠ ପରିଚାଳନାଗତ ଦକ୍ଷତା ଏବଂ କର୍ମଚାରୀମାନଙ୍କର କର୍ମଦକ୍ଷତା ଯୋଗୁଁ ଓ.ଏମ୍.ସି. ସଫଳତାର ଶୀର୍ଷରେ ପହଞ୍ଚି ପାରିଛି । ଭାରତର ଖଣିଜ ସେକ୍ଟରରେ ଆଜି ଓଡ଼ିଶା ଖଣି ନିଗମ ବୃହତ୍ ସରକାରୀ ଶିଳ୍ପ ଉଦ୍ୟୋଗରେ ପରିଣତ ହୋଇ ୭୨୫ କୋଟି ଟଙ୍କାର କାରବାର କରୁଅଛି ।

ନିଗମ ମୁଖ୍ୟତଃ କ୍ରୋମ୍ ଓ ଲୌହ ପଥର ଅନ୍ୱେଷଣ, ଉପଯୋଗ ଏବଂ ରପ୍ତାନୀ କରିବା ସହିତ ଆଜି ଭାରତର କ୍ରୋମ୍ ଓ ଲୌହ ପଥରର ଏକ ଅଗ୍ରଣୀ ରପ୍ତାନୀକାରୀ ସଂସ୍ଥା ହୋଇପାରିଛି । ଶତକଡ଼ା ଶହେ ଭାଗ କ୍ରୋମ୍ ପଥର ରପ୍ତାନୀକାରୀ ପ୍ରକଳ୍ପ ଯୋଗୁଁ ଓ.ଏମ୍.ସି. ଦେଶର ଏକ ଅଗ୍ରଣୀ କ୍ରୋମ୍ ରପ୍ତାନୀକାରୀ ଉଦ୍ୟୋଗ ଅଟେ । ସୁସଂଗତ ରପ୍ତାନୀ ସଂପାଦନ ଯୋଗୁଁ ନିଗମକୁ ୧୯୯୮ ମସିହାରୁ ୨୦୦୪ ମସିହା ପର୍ଯ୍ୟନ୍ତ କ୍ରମାଗତ ଭାବେ କେପ୍‌ସିଲ ରପ୍ତାନୀ ପୁରସ୍କାରରେ ଅଳଙ୍କୃତ କରାଯାଇପାରିଛି ।

୨୦୦୬ ବର୍ଷ ନିଗମକୁ ଭାରତ ସରକାରଙ୍କ ବାଣିଜ୍ୟ ମନ୍ତ୍ରଣାଳୟ ଅଧୀନସ୍ଥ ବିଦେଶ ରପ୍ତାନୀ ମହାନିର୍ଦ୍ଦେଶକ ତିନି ତାରକା ରପ୍ତାନୀ ଉଦ୍ୟୋଗର ମାନ୍ୟତା ପ୍ରଦାନ କରିଛନ୍ତି । ଓଡ଼ିଶାର ପ୍ରଥମ ସରକାରୀ ଶିଳ୍ପ ଉଦ୍ୟୋଗ ଭାବେ ଏହି ମାନ୍ୟତା ଓ.ଏମ୍.ସି. ପାଇପାରିଛି । ଏହାପୂର୍ବରୁ ନିଗମ ତା'ର ବିଭିନ୍ନ ବିଭାଗ ସହିତ ସହଜ ଓ ଶୀଘ୍ର ଯୋଗସୂତ୍ର ରକ୍ଷା କରି ନିଷ୍ପତ୍ତି ନେବା ପାଇଁ ଏସ୍.ଏ.ପି. (ସିଷ୍ଟମ ଆପ୍ଲିକେସନ୍ ଆଣ୍ଡ ପ୍ରକଳ୍ପ) ନାମକ ଏକ ଇ.ଆଇ.ପି. ସାଧନ ଆରମ୍ଭ କରିବାରେ ଦେଶର ଖଣିଜ ସଂସ୍ଥାଗୁଡ଼ିକ ମଧ୍ୟରେ ପ୍ରଥମ ସରକାରୀ ଶିଳ୍ପ ଉଦ୍ୟୋଗ ହୋଇପାରିଥିଲା ।

ନିକଟରେ ଏକ ଔପଚାରିକ ଉତ୍ସବରେ ଓଡ଼ିଶା ଖଣି ନିଗମକୁ ଏହି ତିନି ତାରକା ରପ୍ତାନୀ ଉଦ୍ୟୋଗ ଭାବେ ମାନ୍ୟତା ଅର୍ପଣ କରାଯିବ ବୋଲି ନିଗମ ସୂତ୍ରରୁ ଜଣାପଡ଼ିଛି ।

# ଜାତୀୟ ଉପଭୋକ୍ତା ଦିବସ

ବିଶ୍ୱର କୁମାର ନାୟକ

ମାର୍ଚ୍ଚ ୧୫ ତାରିଖ ୧୯୮୫ ମସିହାରେ ଜାତିସଂଘର ଏକ ସଦସ୍ୟ ଭାବରେ ଭାରତ ଉପଭୋକ୍ତା ସୁରକ୍ଷା ସମ୍ପର୍କୀୟ କନ୍‌ଭେନ୍‌ସନରେ ସ୍ୱାକ୍ଷର କରିଥିଲା । ତା'ପରେ ଉପଭୋକ୍ତାମାନଙ୍କର ସୁରକ୍ଷା ପାଇଁ ଏକ ବିଧେୟକ ଆଣିବା ନିମନ୍ତେ ଆମ ଦେଶ ଅଙ୍ଗୀକାରବଦ୍ଧ ହୋଇଥିଲା । ୧୯୮୬ ମସିହା ଡିସେମ୍ବର ୫ ତାରିଖରେ ପାର୍ଲାମେଣ୍ଟରେ ଉପଭୋକ୍ତା ସୁରକ୍ଷା ବିଲ୍ ଅଣାଯାଇଥିଲା ଓ ସେହି ମାସ ୨୪ ତାରିଖରେ ମହାମହିମ ରାଷ୍ଟ୍ରପତିଙ୍କର ତାହା ସ୍ୱୀକୃତି ଲାଭ କରିଥିଲା । ସାରା ଦେଶରେ ଜାତୀୟ ଉପଭୋକ୍ତା ଦିବସ ରୂପେ ପାଳନ କରାଯାଉଛି । ଏହି ଦିବସଟିକୁ ପାଳନ କରିବା ଅବସରରେ ଏକ ସଂକଳ୍ପ କରାଯାଇଛି, ତାହା ହେଉଛି 'ଉପଭୋକ୍ତା ସ୍ୱାସ୍ଥ୍ୟ ଓ ସୁରକ୍ଷା' ।

ଦେଶର ପ୍ରତ୍ୟେକ ନାଗରିକ ବୟସ ନିର୍ବିଶେଷରେ ଜନ୍ମଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଉପଭୋକ୍ତା ଶ୍ରେଣୀଭୁକ୍ତ । କାରଣ ପ୍ରତ୍ୟେକ ବ୍ୟକ୍ତି କୌଣସି ଦ୍ରବ୍ୟ ବା ସେବା ମୂଲ୍ୟ ବିନିମୟରେ ଗ୍ରହଣ କରିଥାଏ । ଉପଭୋକ୍ତା ଆଇନ ମାଧ୍ୟମରେ ଖାଉଟିମାନଙ୍କର ସ୍ୱାର୍ଥ ରକ୍ଷା ସହିତ ମୂଲ୍ୟ ବିନିମୟରେ କ୍ରୟ କରିବା ଦ୍ରବ୍ୟ, ସେବାରେ ତ୍ରୁଟି ପାଇଁ ତା'ର ପ୍ରତିକାର ବା କ୍ଷତିପୂରଣ ଦେବା ଏହି ଆଇନ୍‌ର ଲକ୍ଷ୍ୟ । ଉପଭୋକ୍ତାଙ୍କୁ ସରଳ, ଶୀଘ୍ର ଓ ଅଳ୍ପ ଖର୍ଚ୍ଚରେ ବିବାଦର ଫଇସଲା କରି କ୍ଷତିପୂରଣ ଦେବା ଏହି ଆଇନର ଉଦ୍ଦେଶ୍ୟ । ଏଥିପାଇଁ ଆଇନରେ ଏକ ତ୍ରିସ୍ତରୀୟ ବିବାଦ ଫଇସଲା ମଞ୍ଚ ଗଠନ କରିବାର ବ୍ୟବସ୍ଥା ଅଛି ।

ଯେକୌଣସି ବ୍ୟକ୍ତି କୌଣସି ଦ୍ରବ୍ୟ ମୂଲ୍ୟ ଦେଇ କ୍ରୟ କରିଥିଲେ ବା ମୂଲ୍ୟ ଦେବାକୁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ କିମ୍ବା ମୂଲ୍ୟର କିଛି ଅଂଶ ଦେଇ ଅବଶିଷ୍ଟ ଅଂଶ ପରେ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ କିମ୍ବା କୌଣସି ପ୍ରଚଳିତ ବ୍ୟବସ୍ଥା ଅନୁସାରେ ବିକ୍ରେତାର ସମ୍ମତିପୂର୍ବକ ଦ୍ରବ୍ୟ ବ୍ୟବହାର ପରେ ମୂଲ୍ୟ ଦେବାପାଇଁ ସ୍ୱୀକୃତି ଦେଇଥିଲେ, ସେ ଗ୍ରାହକ ବା ଉପଭୋକ୍ତା ଶ୍ରେଣୀର ଅନ୍ତର୍ଭୁକ୍ତ ହେବେ । କିନ୍ତୁ ଦ୍ରବ୍ୟକୁ ପୁନଃ ବିକ୍ରୟ ବା ବ୍ୟବସାୟ ଉଦ୍ଦେଶ୍ୟରେ କ୍ରୟ କରିଥିଲେ ଉପଭୋକ୍ତା ହୋଇପାରିବେ ନାହିଁ । ଉଲ୍ଲେଖଯୋଗ୍ୟ ଯେ ନିଜର ଆତ୍ମନିଯୁକ୍ତି ବା ଜୀବିକା ନିର୍ବାହ ଉଦ୍ଦେଶ୍ୟରେ କ୍ରୟ କରିଥିବା ଦ୍ରବ୍ୟ ବ୍ୟବସାୟରେ ନିୟୋଜିତ ହେଲେ ମଧ୍ୟ ତାହା ଉପଭୋକ୍ତା ସଂଜ୍ଞାର ଶ୍ରେଣୀଭୁକ୍ତ ହେବ ନାହିଁ । ସେହିପରି କୌଣସି ବ୍ୟକ୍ତି ମୂଲ୍ୟ ବିନିମୟରେ ବା ଭଡ଼ା ଦେଇ କୌଣସି ସେବା ଯଦି ଗ୍ରହଣ କରିଥାନ୍ତି ବା ମୂଲ୍ୟ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥାନ୍ତି କିମ୍ବା ଆଂଶିକ ମୂଲ୍ୟ ଦେଇ ଅବଶିଷ୍ଟାଂଶ ପରେ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥାନ୍ତି କିମ୍ବା କୌଣସି ପ୍ରଚଳିତ ବ୍ୟବସ୍ଥା ଅନୁଯାୟୀ ଭଡ଼ା ଦେଇଥିବା ବ୍ୟକ୍ତିଙ୍କ ସ୍ୱୀକୃତି ନେଇ ସେହି ସେବା ଗ୍ରହଣକାରୀ ଓ ସେହି ସେବା ଦ୍ୱାରା ଉପକୃତ ହେଉଥିବା ବ୍ୟକ୍ତି ବା ଅନ୍ୟ କୌଣସି ବ୍ୟକ୍ତି ଉପଭୋକ୍ତା ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇପାରିବେ ।

ଏହି ବିଧେୟକଟିରେ ଖାଉଟିମାନଙ୍କୁ କେତୋଟି ମୌଳିକ ଅଧିକାର ଯୋଗାଇ ଦେବା ପାଇଁ ଉଦ୍ଦେଶ୍ୟ ରଖି ତିଆରି କରାଯାଇଛି । ସେଗୁଡ଼ିକ ହେଲା -

(କ) ଧନ ଜୀବନ ପ୍ରତି ବିପଦ ସୃଷ୍ଟି କରୁଥିବା ଦ୍ରବ୍ୟ ବା ସେବା ବିକ୍ରୟ/ପ୍ରଚଳନରୁ ରକ୍ଷା କରିବାର ଅଧିକାର

(ଖ) ସେବା ବା ଦ୍ରବ୍ୟର ଗୁଣ, ପରିମାଣ, ପ୍ରକ୍ରିୟା, ମାନ, ବିଶୁଦ୍ଧତା ଏବଂ ମୂଲ୍ୟ ସଂପର୍କରେ ଗ୍ରାହକଙ୍କ ସୂଚନା ପ୍ରାପ୍ତିର ଅଧିକାର ସାବ୍ୟସ୍ତ କରାଇ ଅସାଧୁ ବ୍ୟବସାୟରୁ ରକ୍ଷା କରିବା

(ଗ) ଯେଉଁ କ୍ଷେତ୍ରରେ ସମ୍ଭବପର, ଗ୍ରାହକମାନେ ଆବଶ୍ୟକୀୟ ଦ୍ରବ୍ୟ ବା ସେବା ପ୍ରତିଯୋଗିତାମୂଳକ ମୂଲ୍ୟରେ ପାଇବାର ଅଧିକାର

(ଘ) ଗ୍ରାହକମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଉପଯୁକ୍ତ ସଂସ୍ଥା ମାଧ୍ୟମରେ ବିବାଦର ଶୁଣାଣି ଓ ସେମାନଙ୍କର ସ୍ୱାର୍ଥର ସୁରକ୍ଷା ଅଧିକାର

(ଙ) ଅସାଧୁ ଓ ମୁନାଫାଖୋର ବ୍ୟବସାୟ ଓ ଗ୍ରାହକମାନଙ୍କର ଶୋଷଣ ବିରୁଦ୍ଧରେ ପ୍ରତିକାର ପାଇବାର ଅଧିକାର ଏବଂ

(ଚ) ଦାୟିତ୍ୱ ଓ ଅଧିକାର ସଂପର୍କରେ ସଚେତନ କରାଇବା ପାଇଁ ଶିକ୍ଷା ପାଇବାର ଅଧିକାର ।

ଏହି ଉପଭୋକ୍ତାଙ୍କ ଅଧିକାର ସୁରକ୍ଷିତ ରଖିବା ପାଇଁ କେନ୍ଦ୍ର, ରାଜ୍ୟ ଓ ଜିଲ୍ଲା ସ୍ତରରେ ଉପଭୋକ୍ତା ସୁରକ୍ଷା ପରିଷଦ ଗଠନ କରିବାର ବ୍ୟବସ୍ଥା ରଖାଯାଇଛି । ଆମ ରାଜ୍ୟରେ ପ୍ରତି ଜିଲ୍ଲାରେ ଓ ଅତିରିକ୍ତ ରାଉରକେଲାଠାରେ ଏହିପରି ୩୧ଟି ଜିଲ୍ଲା ଖାଉଟି ବିବାଦ ବିଚାର ମଞ୍ଚ ଓ ରାଜ୍ୟ ଖାଉଟି ଆୟୋଗ କଟକଠାରେ ପ୍ରତିଷ୍ଠା କରାଯାଇଛି ।

ଉପରେ ବର୍ଣ୍ଣିତ ହୋଇଥିବା ଦ୍ରବ୍ୟ ଓ ସେବାଜନିତ ତ୍ରୁଟି ପାଇଁ ପ୍ରତ୍ୟେକ ଉପଭୋକ୍ତା ସର୍ବାଧିକ ୨୦ ଲକ୍ଷ ଟଙ୍କାର ଦାବୀ ନେଇ ଜିଲ୍ଲା ଖାଉଟି ମଞ୍ଚକୁ ଯାଇପାରିବେ । ସର୍ବାଧିକ ୧ କୋଟି ଟଙ୍କା ପାଇଁ ରାଜ୍ୟ କମିଶନ ଓ ତଦୁର୍ଦ୍ଧ୍ୱ ଟଙ୍କା ପାଇଁ ଜାତୀୟ କମିଶନଙ୍କୁ ଯାଇପାରିବେ । ସେଥିରେ ସେ ସନ୍ତୁଷ୍ଟ ନ ହେଲେ ମାନ୍ୟବର ସୁପ୍ରିମକୋର୍ଟକୁ ଯାଇପାରନ୍ତି । ପ୍ରଚଳିତ ନିୟମ ଅନୁସାରେ ଅନ୍ତ୍ୟୋଦୟ ଅନ୍ନ କାର୍ଡ଼ଧାରୀ ବ୍ୟକ୍ତି ହୋଇନଥିଲେ ୧ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ୧୦୦ ଟଙ୍କା, ୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ୨୦୦ ଟଙ୍କା, ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ୪୦୦ ଟଙ୍କା ଓ ୧୦ ଲକ୍ଷରୁ ୨୦ ଲକ୍ଷ ଟଙ୍କା ମଧ୍ୟରେ ୫୦୦ ଟଙ୍କା ଫିସ୍ ସହ ଜିଲ୍ଲା ଖାଉଟି ମଞ୍ଚରେ ବିବାଦ ଦାୟର କରିପାରିବେ । ୧ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଅନ୍ତ୍ୟୋଦୟ ଅନ୍ନଯୋଜନା କାର୍ଡ଼ଧାରୀ ବ୍ୟକ୍ତିଙ୍କୁ ଫିସ୍ ଦେବାକୁ ପଡ଼ିବ ନାହିଁ । ସାଧାରଣତଃ ବିବାଦଗୁଡ଼ିକ ୯୦ ଦିନ ମଧ୍ୟରେ ଫଇସଲା ହେବାପାଇଁ ବ୍ୟବସ୍ଥା କରାଯାଇଛି । ଯଦି ପରୀକ୍ଷାଗାରକୁ ନମୂନା ପଠାଇବାକୁ ହେଉଥାଏ, ତା'ହେଲେ ତାହା ୧୫୦ ଦିନ ମଧ୍ୟରେ ଫଇସଲା ହେବା ପାଇଁ ଧାର୍ଯ୍ୟ କରାଯାଇଛି । ଜଣେ ଉପଭୋକ୍ତା ଜିଲ୍ଲା ଖାଉଟି ମଞ୍ଚର ଫଇସଲା ବିରୁଦ୍ଧରେ ୩୦ ଦିନ ମଧ୍ୟରେ ପୁନଃ ଅପିଲ୍ କରିପାରିବେ ।

**ଦ୍ରବ୍ୟ କ୍ରୟ କରିଥିବା ଜଣେ ଉପଭୋକ୍ତା**

(କ) ଦ୍ରବ୍ୟ ନିମ୍ନମାନର ହୋଇଥିଲେ,

(ଖ) ଦ୍ରବ୍ୟ ଓଜନ ବା ମାପରେ କମ୍ ଥିଲେ,

(ଗ) ଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରିତ ମୂଲ୍ୟ ଅପେକ୍ଷା ବେଶୀ ହୋଇଥିଲେ,

(ଘ) ବ୍ୟବସାୟୀଙ୍କର ଅସାଧୁ କାରବାର ଯୋଗୁଁ କ୍ଷତି ହୋଇଥିଲେ,

(ଙ) ବିକ୍ରି ପାଇଁ ଉଦ୍ଦିଷ୍ଟ ଦ୍ରବ୍ୟ ବିପଦସଙ୍କୁଳ ହୋଇଥିଲେ, ତାହାର ବିକ୍ରୀ ବନ୍ଦ କରିବା ବା ତାହାକୁ ବଜାରରୁ ଅପସାରଣ ପାଇଁ ଉପଭୋକ୍ତା ଖାଉଟି ବିଚାର ମଞ୍ଚରେ ଅଭିଯୋଗ କରିପାରିବେ ।

**ସେବା ଗ୍ରହଣ କରିଥିବା ଉପଭୋକ୍ତା**

(କ) ବର୍ଣ୍ଣିତ ସେବାର ଅବକ୍ଷୟ ହେଲେ,

(ଖ) ସେବାରେ ତ୍ରୁଟି ବା ଅବହେଳା ହୋଇଥିଲେ,

(ଗ) ନିର୍ଦ୍ଧାରିତ ସେବାର ବ୍ୟତିକ୍ରମ ହେଲେ ବିଚାର ମଞ୍ଚରେ ଅଭିଯୋଗ କରିପାରିବେ ।

ଏଠାରେ ମନେ ରଖିବାକୁ ହେବ ଯେ କାରଣ ଉଦ୍ଭବ ହେବାର ୨ ବର୍ଷ ମଧ୍ୟରେ ବିବାଦ ଦାୟର ହେବା ଦରକାର । ଖାଉଟି ନିଜେ କିମ୍ବା କୌଣସି ସ୍ୱେଚ୍ଛାସେବୀ ଉପଭୋକ୍ତା ସଂଗଠନ ଯାହା କମ୍ପାନୀ ଆଇନ୍ କିମ୍ବା ଅନ୍ୟ କୌଣସି ଆଇନ୍ ଦ୍ୱାରା ପଞ୍ଜିକୃତ ହୋଇଥିବେ କିମ୍ବା କେନ୍ଦ୍ର ସରକାର କିମ୍ବା ରାଜ୍ୟ ସରକାର କିମ୍ବା ସମସ୍ୱାର୍ଥ ସମ୍ବଳିତ ଏକ ବା ତତୋଧିକ ଉପଭୋକ୍ତାଙ୍କ ମଧ୍ୟରୁ ଯେ କେହି ଉପଭୋକ୍ତା ଖାଉଟି ବିଚାର ମଞ୍ଚରେ ଅଭିଯୋଗ ଦାଖଲ କରିପାରିବେ ।

ଭାରତ ସରକାର ଇତିମଧ୍ୟରେ ଏହି ଆଇନ୍‌ର କାର୍ଯ୍ୟକାରିତାକୁ ବ୍ୟାପକ କରିବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ୨୦୦୧ ମସିହାରେ ଭାରତ ସରକାର ଏକ ଯୋଜନା ମାଧ୍ୟମରେ ଜିଲ୍ଲାମାନଙ୍କରେ ସଚେତନତା ସୃଷ୍ଟି କରିବା ପାଇଁ ଜିଲ୍ଲାପାଳମାନଙ୍କୁ ଅନୁରୋଧ କରିଥିଲେ । ଏହି ଯୋଜନାର ନାମ ହେଲା 'ଜାଗୃତି ଶିବିର ଯୋଜନା' । ଜିଲ୍ଲାର ବିଭିନ୍ନ ସ୍ଥାନମାନଙ୍କରେ ସଭା ସମିତି ଜରିଆରେ ସମସ୍ତ ଉପଭୋକ୍ତା ଓ ସେବା ଯୋଗାଣକାରୀମାନଙ୍କୁ ସେବା ଉଦ୍ଦେଶ୍ୟରେ ସଚେତନ କରାଇବା ଥିଲା ଏହାର ଆଭିମୁଖ୍ୟ । ଓଡ଼ିଶାର ଖୋର୍ଦ୍ଧା, ନୂଆପଡ଼ା, ମୟୂରଭଞ୍ଜ, ସମ୍ବଲପୁର, ଗଞ୍ଜାମ ଓ ଅନୁଗୁଳ ଜିଲ୍ଲାରେ ଏହା କାର୍ଯ୍ୟକାରୀ ହେଉଅଛି । ୨୦୦୦ ମସିହା ଅକ୍ଟୋବର ମାସରେ କେନ୍ଦ୍ର ସରକାର ଉପଭୋକ୍ତାଙ୍କ ସଚେତନତା ଉଦ୍ଦେଶ୍ୟରେ ଏକ ଯୋଜନା ପ୍ରଣୟନ କରିଥିଲେ, ଯାହାଦ୍ୱାରା ଜିଲ୍ଲା ପରିଷଦ କିମ୍ବା ଜିଲ୍ଲା ପରିଷଦ ଦ୍ୱାରା ମନୋନୀତ କୌଣସି ଉପଭୋକ୍ତା ସଂଗଠନ ଜିଲ୍ଲା ଉପଭୋକ୍ତା ସୂଚନା କେନ୍ଦ୍ର ମାଧ୍ୟମରେ ଉପଭୋକ୍ତା କିମ୍ବା ସରକାରଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରି ଉପଭୋକ୍ତାଙ୍କ ସ୍ୱାର୍ଥ ଏବଂ ତାଙ୍କର ଅଧିକାର ଉପରେ ସଚେତନତା ସୃଷ୍ଟି କରିବେ । ଏହି କାର୍ଯ୍ୟକ୍ରମକୁ ସବୁଦିନେ ଚଳାଇବା ପାଇଁ ତଥା ସ୍ୱେଚ୍ଛାସେବୀ ଉପଭୋକ୍ତା ସଂଗଠନ ସ୍ୱାବଲମ୍ବୀ ହୋଇ କାର୍ଯ୍ୟ କରିବା ପାଇଁ ଚିନ୍ତା କରାଯାଇଥିଲା । ସେଥିପାଇଁ ପ୍ରଥମେ ସେମାନଙ୍କୁ ୩ ବର୍ଷ ପାଇଁ ୫ ଲକ୍ଷ ଟଙ୍କା ଅନୁଦାନ ବା ଗ୍ରାଣ୍ଟ ଦେବାର ବ୍ୟବସ୍ଥା ଅଛି । ଆମ ରାଜ୍ୟରେ ବର୍ତ୍ତମାନ ଢେଙ୍କାନାଳ, କଟକ, ଅନୁଗୋଳ, ବାଲେଶ୍ୱର, କଳାହାଣ୍ଡି ଓ ପୁରୀ ଜିଲ୍ଲାମାନଙ୍କରେ ଜିଲ୍ଲା ଖାଉଟି ସୂଚନା କେନ୍ଦ୍ର ମାଧ୍ୟମରେ ଏହା କାର୍ଯ୍ୟକାରୀ କରାଯାଉଛି ।

ଆମ ରାଜ୍ୟରେ ପ୍ରଥମ ଥର ପାଇଁ ୧ କୋଟି ଟଙ୍କା ମୂଳ ପାଣ୍ଠିରେ ଏକ ଉପଭୋକ୍ତା କଲ୍ୟାଣ ପାଣ୍ଠି ମାର୍ଚ୍ଚ ୨୦୦୫ ମସିହାରେ ଗଠନ କରାଯାଇଛି । ଏଥିରେ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ୫୦:୫୦ ଅଂଶଧନ ଦେଇଛନ୍ତି । ଏହି ପାଣ୍ଠିର ସୁବିନିଯୋଗ କରିବା ପାଇଁ ଓଡ଼ିଶା ଉପଭୋକ୍ତା କଲ୍ୟାଣ ଆଇନ୍ ପ୍ରଣୟନ କରାଯାଇଛି ।

ଏହି ପାଣ୍ଠିକୁ ସ୍ଥାୟୀ କରିବା ପାଇଁ ପୂର୍ବତନ କମ୍‌ରସିଆଲ ଟ୍ୟାକ୍ସ ଆକ୍ଟ ଓ ବର୍ତ୍ତମାନ ପ୍ରଚଳିତ ଭ୍ୟାଟ୍ ଆକ୍ଟର ସହାୟତା ନିଆଯାଇଛି । ଏହି ପାଣ୍ଠିରୁ ଅନୁଦାନ ଦିଆଯାଇ ଉପଭୋକ୍ତା ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ଚେଷ୍ଟା କରାଯାଉଛି ।

ସର୍ବୋପରି ଉପଭୋକ୍ତା ଆଇନକୁ ବ୍ୟାପକ କରିବା ସକାଶେ ସ୍କୁଲ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦେବାର ଆବଶ୍ୟକତା ଅନୁଭୂତ ହୋଇଛି । ତେଣୁ ପ୍ରତି ସ୍କୁଲରେ ଉପଭୋକ୍ତା ସୁରକ୍ଷା ସମ୍ବନ୍ଧୀୟ ପାଠ୍ୟକ୍ରମ ପ୍ରଚଳନ କରିବା ସଂଗେସଂଗେ ପରିବେଶ କ୍ଲବ୍ (Eco Club) ଭଳି ଉପଭୋକ୍ତା କ୍ଲବ୍ ଗଠନ କରିବାକୁ ଚେଷ୍ଟା କରାଯାଉଛି । ଏହି କ୍ଲବ୍‌ର ଉଦ୍ଦେଶ୍ୟ ହେଲା ଯେ ସେମାନେ ସ୍କୁଲ ଛାତ୍ରଛାତ୍ରୀଙ୍କୁ ଉପଭୋକ୍ତା ଦାବି ବା ସୁରକ୍ଷା ଆଇନ ସମ୍ପର୍କରେ ସଚେତନ କରାଇବା ଓ ତାଙ୍କ ମଧ୍ୟରେ ଉପଭୋକ୍ତା ସୁରକ୍ଷାର ଏକ ଜାଗରଣ ସୃଷ୍ଟି କରିବା ଯାହାଫଳରେ ସେମାନେ ଭବିଷ୍ୟତରେ ଏହି ଆନ୍ଦୋଳନକୁ ଆହୁରି ବ୍ୟାପକ କରିପାରିବେ । ପ୍ରତି ସରକାରୀ କିମ୍ବା ସରକାରୀ ସ୍ୱୀକୃତ ସ୍କୁଲମାନଙ୍କରେ ଅତି କମ୍‌ରେ ୫୦ ଜଣ ସଦସ୍ୟ ବିଶିଷ୍ଟ କ୍ଲବ୍ ଗଠନ କରାଯିବ । ଯେଉଁଥିରେ ଇଚ୍ଛୁକ ଛାତ୍ରଛାତ୍ରୀମାନେ ସବୁଦିନେ ଏଥିରେ ତାଙ୍କର ସମୟ ଦେଇପାରିବେ । ଏହି କ୍ଲବ୍‌ରେ ଅଧିକ ସଂଖ୍ୟକ ସଦସ୍ୟ ରହିବାରେ କୌଣସି ପ୍ରତିବନ୍ଧକ ନାହିଁ । ଏହି କ୍ଲବ୍ ପାଇଁ ସେହି ସ୍କୁଲର ଜଣେ ଶିକ୍ଷକ ଦାୟିତ୍ୱରେ ରହିବେ । ଏହିପରି ପାଖାପାଖି ୨୦ କିମ୍ବା ତଦୁର୍ଦ୍ଧ୍ୱ ସ୍କୁଲକୁ ପରିଚାଳନା କରିବାକୁ ଏକ ସଂସ୍ଥାକୁ ଦାୟିତ୍ୱ ଦିଆଯିବ । ଏହି ସଂସ୍ଥା ଗୋଟିଏ ସ୍କୁଲ ହୋଇପାରେ କିମ୍ବା ବେସରକାରୀ ସ୍ୱେଚ୍ଛାସେବୀ ସଂସ୍ଥା ହୋଇପାରେ କିମ୍ବା ପେଶାଧାରୀ ସଂସ୍ଥା (Professional body) ହୋଇପାରନ୍ତି । ପ୍ରତି ଉପଭୋକ୍ତା କ୍ଲବ୍‌କୁ ପ୍ରଥମ ଦଫାରେ ଦଶ ହଜାର ଟଙ୍କା ଦିଆଯିବ । ତନ୍ମଧ୍ୟରୁ ସର୍ବାଧିକ ଦୁଇ ହଜାର ଟଙ୍କା ପରିଚାଳନା ସଂସ୍ଥାକୁ ଦିଆଯାଇପାରେ ଅବଶିଷ୍ଟ ଅଂଶ ଉପଭୋକ୍ତା କ୍ଲବ୍ ପାଇଁ ଖର୍ଚ୍ଚ ହେବ । ରାଜ୍ୟରେ ସର୍ବୋତ୍ତମ ତିନୋଟି ଉପଭୋକ୍ତା କ୍ଲବ୍‌କୁ ତାଙ୍କର କାର୍ଯ୍ୟକାରିତାକୁ ଅନୁଧ୍ୟାନ କରି ବର୍ଷ ଶେଷରେ ଅର୍ଥରାଶି ଆକାରରେ ପୁରସ୍କୃତ କରିବାର ବ୍ୟବସ୍ଥା ରହିଛି । ସେହିପରି ସର୍ବଭାରତୀୟ ସ୍ତରରେ ମଧ୍ୟ ପୁରସ୍କାର ଦେବାର ବ୍ୟବସ୍ଥା ଅଛି । ଏହି କ୍ଲବ୍‌ରେ ସଂପୃକ୍ତ ପ୍ରତ୍ୟେକ ଛାତ୍ର ଅନ୍ୟୂନ ଏକ ଟଙ୍କା ଲେଖାଏଁ ସଭ୍ୟ ଚାନ୍ଦା ଦେବେ । ଉପଭୋକ୍ତା କ୍ଲବ୍ ଉପଲବ୍ଧି କଲେ ସଭ୍ୟ ଚାନ୍ଦା ବୃଦ୍ଧି କରିପାରନ୍ତି । କିନ୍ତୁ ଏହି କ୍ଲବ୍ ବିଭିନ୍ନ ପ୍ରଦର୍ଶନୀ, ପୋଷ୍ଟର, ଚିତ୍ରକଳା, କାର୍ଡ଼, ଡ୍ରାମା ଇତ୍ୟାଦି ମାଧ୍ୟମରେ କ୍ଲବ୍‌ର ଆର୍ଥିକ ପରିପୁଷ୍ଟତା ଆଣିପାରନ୍ତି । ସେମାନେ ଜାତୀୟ ଉପଭୋକ୍ତା ଦିବସ ଓ ବିଶ୍ୱ ଉପଭୋକ୍ତା ଦିବସ ପାଳନ କରିବେ ଏବଂ ଏଥିସହିତ ବିଭିନ୍ନ ନୂତନ ଯୋଜନା କିମ୍ବା ମନୋରଞ୍ଜନ/ବିଚିତ୍ରା କାର୍ଯ୍ୟକ୍ରମ ମାଧ୍ୟମରେ ତାଙ୍କର କ୍ଲବ୍‌ର ଆର୍ଥିକ ଉନ୍ନତି ଆଣିପାରନ୍ତି । ଏତଦ୍‌ବ୍ୟତୀତ ସେମାନେ ମ୍ୟାଗାଜିନ୍, ବୁଲେଟିନ୍ ଇତ୍ୟାଦି ପ୍ରକାଶ କରି ବିଜ୍ଞାପନ ମାଧ୍ୟମରେ କ୍ଲବ୍‌କୁ ସମୃଦ୍ଧ କରିପାରନ୍ତି ।

ଏହି ବର୍ଷ ୨୦୦୫-୦୬ ରାଜ୍ୟରେ ୨୫ ଗୋଟି ଜିଲ୍ଲାରେ ୫୦୦ ଉପଭୋକ୍ତା କ୍ଲବ୍ ଗଠନ କରିବାକୁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ବେଳେ ଆସନ୍ତା ବର୍ଷ ପାଇଁ ଆଉ ୫୦୦ଟି ଉପଭୋକ୍ତା କ୍ଲବ୍ ୨୫ଟି ଜିଲ୍ଲାରେ ଗଠନ କରାଯିବ । ଏ ଦିଗରେ ସ୍କୁଲ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କର ସଚେତନତା ଅଭାବରୁ ଯଥେଷ୍ଟ ସଂଖ୍ୟକ ପ୍ରସ୍ତାବ ସରକାରଙ୍କ ପାଖରେ ପହଞ୍ଚି ପାରୁନାହିଁ । ଏଥିପାଇଁ ନିର୍ଦ୍ଧାରିତ ଫର୍ମରେ ଦରଖାସ୍ତ ଜିଲ୍ଲାପାଳମାନଙ୍କ ମଞ୍ଜୁରୀ ସହ ଏହି ବିଭାଗକୁ ଉପଭୋକ୍ତା କ୍ଲବ୍ ଗଠନ ନିମନ୍ତେ ଆର୍ଥିକ ସହାୟତା ପାଇଁ ପଠାଇବେ ।

ଆମ ରାଜ୍ୟରେ ଉପଭୋକ୍ତା ଆନ୍ଦୋଳନ ଗ୍ରାମାଞ୍ଚଳରେ ପହଞ୍ଚି ପାରୁନାହିଁ । ଏହା କେବଳ ସହରାଞ୍ଚଳରେ ସୀମିତ ମାତ୍ର । ଏଥିପାଇଁ ବ୍ୟାପକ ପ୍ରଚାର ଓ ପ୍ରସାର ହୋଇପାରିନାହିଁ । ସମସ୍ତ ଉପଭୋକ୍ତା ସବୁ ଭେଦଭାବ ଭୁଲି ନିଜର ଦାବୀକୁ ହାସଲ କରିବା ପାଇଁ ଚେଷ୍ଟିତ ହୁଅନ୍ତୁ । ଉପଭୋକ୍ତା ଆନ୍ଦୋଳନକୁ ବ୍ୟାପକ ଏବଂ ସଫଳ କରିବା ପାଇଁ ପ୍ରତ୍ୟେକଙ୍କର ସଚେତନତା ଓ ଦାବୀ ହାସଲ କରିବାର ମନୋବୃତ୍ତି ଓ ନିଷ୍ଠା ରହିବା ଅପରିହାର୍ଯ୍ୟ ।

ଯୁଗ୍ମ ଶାସନ ସଚିବ ତଥା ନିର୍ଦ୍ଦେଶକ
ଖାଉଟି କଲ୍ୟାଣ



# ଓଡ଼ିଶାରେ କୃଷିର ବିକାଶରେ ବ୍ୟାଙ୍କ

ବିଜୟ କୁମାର ଦାଶ

ଆମର ଦେଶ ଭାରତ ଏକ ଗ୍ରାମ ବହୁଳ ଦେଶ ଅଟେ । ଦେଶର ମୋଟ ଜନସଂଖ୍ୟାର ଶତକଡ଼ା ୭୭ ଭାଗ ଲୋକ ଗ୍ରାମାଞ୍ଚଳରେ ହିଁ ବାସ କରିଥାନ୍ତି । ତନ୍ମଧ୍ୟରୁ ଶତକଡ଼ା ୬୮ ଭାଗ ଲୋକ କୃଷି ଉପରେ ନିର୍ଭରଶୀଳ ଅଟନ୍ତି । ତେଣୁ ଭାରତର ବିକାଶ କହିଲେ ଗ୍ରାମର ବିକାଶକୁ ବୁଝାଏ ଏବଂ ଗ୍ରାମର ବିକାଶ କହିଲେ ମୁଖ୍ୟତଃ କୃଷିର ବିକାଶକୁ ହିଁ ବୁଝାଇଥାଏ । ଭାରତର ଅର୍ଥନୀତି ଏକ କୃଷିଭିତ୍ତିକ ଅର୍ଥନୀତି ଅଟେ । କୃଷି ଆମ ରାଷ୍ଟ୍ରର ପ୍ରାଣବାୟୁ ଅଟେ । କୃଷି ଆମ ଅର୍ଥନୀତିର ଏକ ବୃହତ୍ ଅଂଶ ଏବଂ ସମଗ୍ର ଘରୋଇ ଉତ୍ପାଦନକୁ ଏକ ଚତୁର୍ଥାଂଶ ଅବଦାନ କରିବା ସହ ସର୍ବାଧିକ ଲୋକଙ୍କୁ ନିଯୁକ୍ତିର ସୁବିଧା ପ୍ରଦାନ କରିଥାଏ । ସରକାର ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ କୃଷିର ଉନ୍ନତି ପାଇଁ ବହୁମୁଖୀ ପଦକ୍ଷେପ ଗ୍ରହଣ କରୁଥିଲେ ମଧ୍ୟ ଭାରତରେ କୃଷି କ୍ଷେତ୍ରରେ ସନ୍ତୋଷଜନକ ଅଗ୍ରଗତି ଲକ୍ଷ୍ୟ କରାଯାଉନାହିଁ । ସଂପ୍ରତି ଭାରତୀୟ କୃଷିରେ ଅନେକ ସମସ୍ୟା ରହିଥିଲେ ମଧ୍ୟ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ହେଉଛି ବ୍ୟାଙ୍କଗୁଡ଼ିକର କୃଷି କ୍ଷେତ୍ରକୁ ପର୍ଯ୍ୟାପ୍ତ ଆର୍ଥିକ ସହାୟତାର ଅଭାବ । ଏହି ପ୍ରବନ୍ଧଟିରେ ଆମେ ଆମ ରାଜ୍ୟ ଓଡ଼ିଶାର କୃଷିକ୍ଷେତ୍ରକୁ ବ୍ୟାଙ୍କଗୁଡ଼ିକର ସହାୟତା ସଂପର୍କରେ ଏକ ସଂକ୍ଷିପ୍ତ ଆଲୋଚନା କରିବା ।

ଆମର ରାଜ୍ୟ ଓଡ଼ିଶା ପ୍ରାୟତଃ ବାତ୍ୟା, ବନ୍ୟା, ଅନାବୃଷ୍ଟି ଆଦି ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେଉଛି, ଯାହା ପ୍ରତ୍ୟକ୍ଷ ଭାବରେ ଆମର କୃଷି ଉତ୍ପାଦନକୁ ପ୍ରଭାବିତ କରୁଛି । ତେବେ ଏସବୁ ପ୍ରାକୃତିକ ବିପର୍ଯ୍ୟୟରୁ କୃଷି ଏବଂ କୃଷକଙ୍କୁ ରକ୍ଷା କରିବା ପାଇଁ ସରକାର ଅନେକ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । କିନ୍ତୁ ସରକାରଙ୍କର ପଦକ୍ଷେପ ସହ ସମନ୍ୱୟ ସ୍ଥାପନ କରି ବ୍ୟାଙ୍କମାନେ ଯେପରି କୃଷିକ୍ଷେତ୍ର ପ୍ରତି ସମ୍ବେଦନଶୀଳତା ପ୍ରଦର୍ଶନ କରିବା କଥା ତାହା କରୁନଥିବାର ପରିଲକ୍ଷିତ ହୋଇଛି । ଫଳରେ ରାଜ୍ୟରେ କୃଷି ଓ କୃଷକର ଆଶାନୁରୂପ ବିକାଶ ସମ୍ଭବ ହୋଇପାରୁନାହିଁ । କୃଷିକ୍ଷେତ୍ରରେ ସ୍ୱଳ୍ପକାଳୀନ ଓ ଦୀର୍ଘକାଳୀନ ପୁଂଜି ବିନିଯୋଗ ହୋଇପାରୁନାହିଁ । ରାଜ୍ୟର ଅଧିକାଂଶ କୃଷକ କ୍ଷୁଦ୍ର ଓ ନାମମାତ୍ର ଚାଷୀ ହୋଇଥିବାରୁ ସେମାନଙ୍କର ସର୍ବପ୍ରଥମ ସମସ୍ୟା ହେଲା ଆର୍ଥିକ ସହାୟତା । ରାଜ୍ୟର କୃଷିର ବିକାଶ ପ୍ରତି ବ୍ୟାଙ୍କଗୁଡ଼ିକ ବିଶେଷକରି ବାଣିଜ୍ୟିକ ବ୍ୟାଙ୍କମାନେ ଯଥୋଚିତ ଧ୍ୟାନ ଦେଉନଥିବାରୁ ନିକଟରେ କୃଷିମନ୍ତ୍ରୀ ଉଦ୍‌ବେଗ ପ୍ରକାଶ କରିଛନ୍ତି । ସରକାରଙ୍କର ଏକ ସଦ୍ୟତମ ରିପୋର୍ଟ ଉପସ୍ଥାପନ କରି ସେ ବିଶଦ ଭାବେ ରାଜ୍ୟର ବିଭିନ୍ନ ବ୍ୟାଙ୍କଗୁଡ଼ିକ କିଭଳି ଭାବରେ କୃଷିକ୍ଷେତ୍ରକୁ ଋଣ ପ୍ରଦାନ କ୍ଷେତ୍ରରେ ଉଦାସୀନ ରହୁଛନ୍ତି, ତାହା ଦର୍ଶାଇଛନ୍ତି ।

ରାଜ୍ୟର ଜାତୀୟକରଣ ଓ ଘରୋଇ ବ୍ୟାଙ୍କଗୁଡ଼ିକ ଯେତେ ପରିମାଣ ପୁଂଜି ସଂଗ୍ରହ କରୁଛନ୍ତି, ତାହାଠାରୁ କମ୍ ଅର୍ଥ ଏଠାରେ ବିନିଯୋଗ କରୁଥିବାବେଳେ କୃଷିକ୍ଷେତ୍ରରେ ଏମାନଙ୍କ ଋଣ ପ୍ରଦାନ ହାର ଅତ୍ୟନ୍ତ ନୈରାଶ୍ୟଜନକ ଅଟେ । ଅନ୍ୟପକ୍ଷରେ ସମବାୟ ବ୍ୟାଙ୍କଗୁଡ଼ିକର ଆର୍ଥିକ ସହାୟତା ଏସବୁ ତୁଳନାରେ ଯଥେଷ୍ଟ ଅଧିକ । ଜାତୀୟକରଣ ବ୍ୟାଙ୍କଗୁଡ଼ିକ ଓଡ଼ିଶାରୁ ସଂଗ୍ରହ କରୁଥିବା ମୋଟ ଜମାର ମାତ୍ର ଶତକଡ଼ା ୮ ଭାଗ କୃଷିଋଣ ଆକାରରେ ବିନିଯୋଗ କରିଥିବାବେଳେ ଘରୋଇ ବ୍ୟାଙ୍କଗୁଡ଼ିକର କୃଷିକ୍ଷେତ୍ରକୁ ଅବଦାନ ୫ ପ୍ରତିଶତରୁ କମ୍ ଅଟେ । ତେବେ ରାଜ୍ୟର ସମବାୟ ବ୍ୟାଙ୍କଗୁଡ଼ିକ ସେମାନଙ୍କ ଜମାର ୧୧୨ ପ୍ରତିଶତ କୃଷିକ୍ଷେତ୍ରକୁ ଆର୍ଥିକ ସହାୟତା ପ୍ରଦାନ କରିଛନ୍ତି ଯାହା ଉଲ୍ଲେଖନୀୟ ଅଟେ ।

ସଂପ୍ରତି ଓଡ଼ିଶାରେ ୨୪ଟି ଜାତୀୟକରଣ ବ୍ୟାଙ୍କର ୧୪୨୩ଟି ଶାଖା ଥିବାବେଳେ ୧୦ଟି ଘରୋଇ ବ୍ୟାଙ୍କର ୧୯ଟି ଶାଖା ଅଛି । ସେହିପରି ରାଜ୍ୟର ୯ଟି ଗ୍ରାମ୍ୟ ବ୍ୟାଙ୍କର ୮୩୫ଟି ଶାଖା କାର୍ଯ୍ୟ କରୁଛି । ଏହି ୯ଟି ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କରୁ ୫ଟି କ୍ଷତିରେ ଚାଲୁଥିବାବେଳେ ୪ଟି ଲାଭ ପ୍ରଦର୍ଶନ କରୁଛି । ସାମଗ୍ରିକ ଭାବରେ ଦେଖିବାକୁ ଗଲେ ୪୩ଟି ବ୍ୟାଙ୍କର ୨୨୭୭ଟି ଶାଖା ଓଡ଼ିଶାରେ ଅଛି । ଏଗୁଡ଼ିକ ମାଧ୍ୟମରେ ୨୮,୧୮୩ କୋଟି ଟଙ୍କାର ଜମା ସଂଗ୍ରହ କରାଯାଇ କୃଷି ଋଣ ବାବଦରେ ମାତ୍ର ୨୫୭୭ କୋଟି ଟଙ୍କା ପ୍ରଦାନ କରାଯାଉଛି, ଯାହା ମୋଟ ଜମାର ମାତ୍ର ୯.୧୪ ପ୍ରତିଶତ ଅଟେ । ସେହିପରି ଜାତୀୟକରଣ ହୋଇଥିବା ବାଣିଜ୍ୟିକ ବ୍ୟାଙ୍କଗୁଡ଼ିକ ଓଡ଼ିଶାରୁ ୨୩,୫୨୭ କୋଟି ଟଙ୍କାର ଜମା ସଂଗ୍ରହ କରି ୧୬,୨୧୫ କୋଟି ଟଙ୍କା ଋଣ ଦେଇଥିବା ବେଳେ ସେଥିରୁ କୃଷିଋଣ ବାବଦରେ ମାତ୍ର ୧୮୩୯ କୋଟି ଟଙ୍କା ପ୍ରଦାନ କରିଛନ୍ତି, ଯାହା ମୋଟ ଋଣର ୧୧.୩୪ ପ୍ରତିଶତ ଅଟେ ।

ରାଜ୍ୟର ଆଞ୍ଚଳିକ ଗ୍ରାମ୍ୟବ୍ୟାଙ୍କଗୁଡ଼ିକ ମଧ୍ୟ କୃଷିକ୍ଷେତ୍ରକୁ ଆବଶ୍ୟକୀୟ ଆର୍ଥିକ ସହାୟତା ପ୍ରଦାନ କରୁନାହାନ୍ତି । ଉଦାହରଣ ସ୍ୱରୂପ, କଟକ ଗ୍ରାମ୍ୟ ବ୍ୟାଙ୍କ ବିଚାରକୁ ନିଆଯାଉ । ଏବେ ଅବଶ୍ୟ କଟକ ଗ୍ରାମ୍ୟ ବ୍ୟାଙ୍କ ଓ ବାଲେଶ୍ୱର ଗ୍ରାମ୍ୟ ବ୍ୟାଙ୍କର ମିଶ୍ରଣ କରାଯାଇ 'କଳିଙ୍ଗ ଗ୍ରାମ୍ୟ ବ୍ୟାଙ୍କ' ଭାବରେ ନୂତନ ନାମକରଣ କରାଯାଇଛି । କଟକ ଗ୍ରାମ୍ୟ ବ୍ୟାଙ୍କ ୨୦୦୧-୦୨ ଆର୍ଥିକ ବର୍ଷରେ ମୋଟ ଋଣର ମାତ୍ର ଶତକଡ଼ା ୭.୫ ଭାଗ କୃଷିକ୍ଷେତ୍ରକୁ ପ୍ରଦାନ କରିଥିବାବେଳେ ୨୦୦୨-୦୩ ଆର୍ଥିକ ବର୍ଷରେ ଏହି ପରିମାଣ ୯.୬୮ ପ୍ରତିଶତକୁ ବୃଦ୍ଧି ପାଇଥିଲା ଏବଂ ୨୦୦୩-୦୪ରେ ଏହା ସାମାନ୍ୟ ବୃଦ୍ଧି ପାଇ ୯.୯ ପ୍ରତିଶତରେ ପହଞ୍ଚିଥିଲା । ତେବେ ୨୦୦୪-୦୫ରେ ମୋଟ ଋଣର ୩୦.୬୬ ପ୍ରତିଶତ କୃଷି କ୍ଷେତ୍ରକୁ ପ୍ରଦାନ କରାଯାଇଛି । ରାଜ୍ୟର ସମବାୟ ବ୍ୟାଙ୍କଗୁଡ଼ିକର ମୋଟ ୩୨୧ଟି ଶାଖା ରହିଛି । ଏଗୁଡ଼ିକ ମାଧ୍ୟମରେ ୧୮୪୯ କୋଟି ୪୦ ଲକ୍ଷ ଟଙ୍କା ଜମା ସଂଗ୍ରହ କରାଯାଇଥିବାବେଳେ ୨୬୩୬ କୋଟି ୨୫ ଲକ୍ଷ ଟଙ୍କା ଋଣ ଦିଆଯାଇଛି । ଏଥିମଧ୍ୟରୁ କୃଷି ପାଇଁ ୨୦୭୨ କୋଟି ୪୧ ଲକ୍ଷ ଟଙ୍କା ଋଣ ଦିଆଯାଇଛି । ଅର୍ଥାତ୍ ସମବାୟ ବ୍ୟାଙ୍କଗୁଡ଼ିକ ମୋଟ ଜମା ସଂଗ୍ରହର ୧୧୨ ପ୍ରତିଶତ କୃଷି ଋଣ ଆକାରରେ ଦେଇଛନ୍ତି । ତେଣୁ ସମବାୟ ବ୍ୟାଙ୍କଗୁଡ଼ିକୁ ଅଧିକ ସୁଦୃଢ଼ କରାଯିବା ସହ ଏଥିରେ ଅଧିକ ପୁଂଜି ଖଟାଇବା ଲାଗି ଆକର୍ଷଣୀୟ ଯୋଜନା ପ୍ରଣୟନ ଉପରେ କୃଷି ମନ୍ତ୍ରୀ ଗୁରୁତ୍ୱାରୋପ କରିଛନ୍ତି । ଜାତୀୟକରଣ ଓ ଅନ୍ୟାନ୍ୟ ବ୍ୟାଙ୍କଗୁଡ଼ିକ ସେମାନଙ୍କ ଜମାର ସର୍ବନିମ୍ନ ୬୦ ପ୍ରତିଶତ ଋଣ ଦେବାଲାଗି ସେ ପରାମର୍ଶ ଦେଇଛନ୍ତି । ବ୍ୟାଙ୍କଗୁଡ଼ିକ କୃଷକ ଓ ଅନଗ୍ରସର ଶ୍ରେଣୀର ବିକାଶ ପାଇଁ ସାମାଜିକ ଦାୟିତ୍ୱ ସମ୍ପାଦନ ଉପରେ ସେ ଗୁରୁତ୍ୱାରୋପ କରିଛନ୍ତି । ବ୍ୟାଙ୍କଗୁଡ଼ିକ କୃଷି, କୃଷିଭିତ୍ତିକ ଶିଳ୍ପ, ପଶୁ ଓ ମତ୍ସ୍ୟପାଳନ ଏବଂ କୁଟୀର ଶିଳ୍ପର ବିକାଶ ପାଇଁ ଅଧିକ ପୁଂଜି ବିନିଯୋଗ କରିବାର ଆବଶ୍ୟକତା ରହିଛି । କୃଷି ପରି ପ୍ରାଥମିକ ଓ ଅଗ୍ରାଧିକାର କ୍ଷେତ୍ରରେ କୃଷିଋଣର ଚାହିଦା ବୃଦ୍ଧି ପାଇବା ବେଳେ ଏହାର ଯୋଗାଣ ହ୍ରାସ ପାଇବାରେ ଲାଗିଛି । କୃଷିଋଣର ଚାହିଦା ଏବଂ ଏହାର ଯୋଗାଣ ମଧ୍ୟରେ ବ୍ୟବଧାନ ଯଥାସମ୍ଭବ ହ୍ରାସ ପାଇବା ଉଚିତ । କୃଷିର ବିକାଶ ହେଲେ କୃଷକ ପରିବାର ଆର୍ଥିକ ସ୍ୱଚ୍ଛଳତାରେ ବଞ୍ଚିବା ସହ ଭବିଷ୍ୟତରେ ନିବେଶ ପାଇଁ କିଛି ସଞ୍ଚୟ ସୃଷ୍ଟି କରିପାରିବ ।

ରାଜ୍ୟରେ କୃଷିର ଉଲ୍ଲେଖନୀୟ ବିକାଶ ପାଇଁ ଆନୁଷ୍ଠାନିକ ଋଣ ଯୋଗାଉଥିବା ବ୍ୟାଙ୍କଗୁଡ଼ିକର ଅନେକ କିଛି ପଦକ୍ଷେପ ନେବା ଜରୁରୀ ଅଟେ । ପ୍ରଥମତଃ, କୃଷି ଆମ ଅର୍ଥନୀତିର ମେରୁଦଣ୍ଡ ହୋଇଥିବାରୁ କୃଷିକ୍ଷେତ୍ରକୁ ପର୍ଯ୍ୟାପ୍ତ ଦୀର୍ଘମିଆଦି ଋଣ ବ୍ୟାଙ୍କଗୁଡ଼ିକ ଯୋଗାଇ ଦେବା ଉଚିତ୍ । ଦ୍ୱିତୀୟତଃ, ବ୍ୟାଙ୍କଗୁଡ଼ିକ କୃଷିକ୍ଷେତ୍ରରେ ଋଣ ଅନାଦେୟର ମୁଖ୍ୟ କାରଣଗୁଡ଼ିକ ଚିହ୍ନଟ କରି ପଦକ୍ଷେପ ନେବା ଉଚିତ୍, ଯାହାଦ୍ୱାରା ଋଣ ଆଦାୟ ପରିମାଣ ବୃଦ୍ଧିପାଇବା ସହ ପୁଂଜିର ପୁନଃଲଗାଣ ସମ୍ଭବ ହୋଇପାରିବ । ଏ କ୍ଷେତ୍ରରେ ସରକାରଙ୍କର ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସରକାର କୃଷକମାନଙ୍କୁ ଅଧିକ ବିପଣନ ସହାୟତା ଏବଂ ସର୍ବନିମ୍ନ ସହାୟକ ଦରର ସୁବିଧା ଯୋଗାଇ ଦେଲେ କୃଷିଜାତ ସାମଗ୍ରୀ ଉଚିତ୍ ମୂଲ୍ୟରେ ବିକ୍ରୀ ହେବ ଏବଂ କୃଷକର ଆର୍ଥିକ ସ୍ଥିତିରେ ଉନ୍ନତି ହେବା ଫଳରେ କୃଷକମାନଙ୍କର ବ୍ୟାଙ୍କଋଣ ପରିଶୋଧର ହାର ବୃଦ୍ଧି ପାଇବ । ବ୍ୟବସାୟଭିତ୍ତିକ କୃଷିଜାତ ଦ୍ରବ୍ୟର ବଜାରରେ ସ୍ୱଳ୍ପ ଦରର ପ୍ରଭାବରେ ଉଭୟ କୃଷକ ଏବଂ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥା କ୍ଷତିଗ୍ରସ୍ତ ହେଉଛି । ବାଣିଜ୍ୟିକ ବ୍ୟାଙ୍କ ଓ ଅନ୍ୟାନ୍ୟ ବ୍ୟାଙ୍କଗୁଡ଼ିକ କୃଷିକ୍ଷେତ୍ରକୁ ପର୍ଯ୍ୟାପ୍ତ ଋଣ ପ୍ରଦାନ ନ କରିବାର ଏକ ପ୍ରମୁଖ କାରଣ ହେଲା କୃଷକମାନଙ୍କର ଋଣ ପରିଶୋଧରେ ଅନିୟମିତତା । ଏହାଛଡ଼ା ବ୍ୟାଙ୍କଗୁଡ଼ିକ ବିଭିନ୍ନ ପ୍ରଦର୍ଶନୀ, ଋଣମେଳା, ସେମିନାର୍, ସାଧାରଣ ସଭା ମାଧ୍ୟମରେ କୃଷକମାନଙ୍କୁ ଶିକ୍ଷିତ ଏବଂ ସଚେତନ କରିବା ଆବଶ୍ୟକ, ଯାହାଫଳରେ ସେମାନେ ଉପଯୁକ୍ତ ସମୟରେ ଋଣ ପରିଶୋଧ କରିପାରିବେ । ସଂକ୍ଷେପରେ କହିବାକୁ ଗଲେ, ବ୍ୟାଙ୍କଗୁଡ଼ିକ କୃଷକମାନଙ୍କର ଅନ୍ତରଙ୍ଗ ବନ୍ଧୁ ଭାବରେ କାର୍ଯ୍ୟ କରିବା ଉଚିତ୍ । ସେହିପରି ଶସ୍ୟବୀମା ଯୋଜନାକୁ ବ୍ୟାପକ କରାଯିବା ଆବଶ୍ୟକ, ଯାହାଦ୍ୱାରା ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ମଧ୍ୟ ସେମାନଙ୍କର ଆର୍ଥିକସ୍ଥିତି ଦୃଢ଼ ରହିବା ସହ କୃଷକମାନେ ଠିକ୍ ସମୟରେ ଋଣ ପରିଶୋଧ କରିପାରିବେ । ଶେଷରେ ଆମ ରାଜ୍ୟର ଅଧିକାଂଶ କୃଷକଙ୍କର ଆର୍ଥିକ ସ୍ୱଚ୍ଛଳତା, ସ୍ଥାୟୀ ଆୟ ସୃଷ୍ଟିକାରୀ ପରିସଂପତ୍ତି ନଥିବାରୁ ସେମାନଙ୍କୁ ଯଥାସମ୍ଭବ ସହଜରେ ଏବଂ ସରଳ ପ୍ରକ୍ରିୟାରେ ଋଣ ମଂଜୁର କରିବା ଉଚିତ୍, ଯାହାଦ୍ୱାରା କୃଷକମାନେ ବ୍ୟାଙ୍କ ଋଣ ପ୍ରତି ଅଧିକରୁ ଅଧିକ ଆକର୍ଷିତ ହୋଇପାରିବେ । କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥାରୁ ଅଧିକ ସୁବିଧା ସୁଯୋଗ ପାଇବା ଆବଶ୍ୟକ ।

ପରିଶେଷରେ ଏହା କୁହାଯାଇପାରେ ଯେ, ଆମ ରାଜ୍ୟରେ ବିଭିନ୍ନ ଜାତୀୟକରଣ ହୋଇଥିବା ବାଣିଜ୍ୟିକ ବ୍ୟାଙ୍କ, ଘରୋଇ ବ୍ୟାଙ୍କ ଓ ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କଗୁଡ଼ିକର କୃଷି ଏବଂ ତତ୍‌ସଂଲଗ୍ନ କ୍ଷେତ୍ରରେ ପର୍ଯ୍ୟାପ୍ତ ଋଣ ସଂପ୍ରସାରଣର ଆବଶ୍ୟକତା ରହିଛି । ବ୍ୟାଙ୍କଗୁଡ଼ିକ କେବଳ ଲାଭ ଅର୍ଜନକାରୀ ଅନୁଷ୍ଠାନ ନୁହଁନ୍ତି । ସମୟୋପଯୋଗୀ ବ୍ୟାଙ୍କ ସେବା ଦ୍ୱାରା କୃଷିର ଉନ୍ନତି ମାଧ୍ୟମରେ ଓଡ଼ିଶାର ଅର୍ଥନୀତିର ବିକାଶ ସେମାନଙ୍କର ଏକ ସାମାଜିକ ଦାୟିତ୍ୱ ହେବା ଉଚିତ୍ । ଓଡ଼ିଶାର ଗ୍ରାମାଞ୍ଚଳରୁ ଦାରିଦ୍ର୍ୟ, ବେକାରୀ ହ୍ରାସ ନିମିତ୍ତ କୃଷି ଓ କୃଷିଭିତ୍ତିକ ଶିଳ୍ପର ବିକାଶ ଅପରିହାର୍ଯ୍ୟ ଅଟେ । ତେଣୁ ରାଜ୍ୟର କୃଷିର ବିକାଶ ଦ୍ୱାରା ସର୍ବାଧିକ ଜନସାଧାରଣଙ୍କର ସର୍ବାଧିକ କଲ୍ୟାଣ ବ୍ୟାଙ୍କଗୁଡ଼ିକର ମୌଳିକ ଲକ୍ଷ୍ୟ ହେବା ଉଚିତ୍ ।

ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଞ୍ଚଳିକ ପଞ୍ଚାୟତ ମହାବିଦ୍ୟାଳୟ
ସୁଜନପୁର, ଯାଜପୁର-୭୫୫୦୧୭

# ମୁମ୍ବାଇଠାରେ ଅନୁଷ୍ଠିତ ଓଡ଼ିଆ ଚଳଚ୍ଚିତ୍ର ଏବଂ ସାଂସ୍କୃତିକ ମହୋତ୍ସବ-୨୦୦୬

ସୁଚେତା ପ୍ରିୟଦର୍ଶିନୀ




**ଆ**ରବ ସାଗରର ନୀଳ ଜଳରାଶି ଉପରେ ବିଛାଡ଼ି ହୋଇ ପଡୁଥିଲା ଅସ୍ତଗାମୀ ସୂର୍ଯ୍ୟଙ୍କର ଲୋହିତ କିରଣ । ଦିନ ଥିଲା, ୨୦୦୬ ମସିହା ଜାନୁଆରୀ ମାସ ୧୬ ତାରିଖ ସୋମବାର ସନ୍ଧ୍ୟା । ସ୍ଥାନ ଥିଲା, ମୁମ୍ବାଇ ମହାନଗରୀର ବାନ୍ଦ୍ରାସ୍ଥିତ ରଙ୍ଗଶାରଦା ଅଡିଟୋରିଅମ୍‌ର ଭରପୂର ପ୍ରେକ୍ଷାଳୟ । ମଞ୍ଚ ଉପରୁ ଭାସି ଆସୁଥିଲା ଗୁରୁ ଗଙ୍ଗାଧର ପ୍ରଧାନଙ୍କ ପଖାଉଜ ବାଦ୍ୟର ଧ୍ୱନି ସହ ନୃତ୍ୟଶିଳ୍ପୀମାନଙ୍କର ଘୁଙ୍ଗୁରର ଶବ୍ଦ ସମ୍ମିଶ୍ରଣରେ 'ଶିବପଞ୍ଚକ'ର ଚମତ୍କାର ଓଡ଼ିଶୀନୃତ୍ୟ । ଧୀରେ ଧୀରେ ରାତି ଗଭୀର ହେବା ସହ ଗୋଟିପୁଅ ନୃତ୍ୟ, ଚଇତିଘୋଡ଼ା ନାଚ, କଳାହାଣ୍ଡିର ବୀର ରସଯୁକ୍ତ ଘୁମୁରାନାଚ ଏବଂ ସାମାଜିକ ଚେତନାର ପ୍ରତିଫଳନ ଦଣ୍ଡନାଚର ଉଦ୍ଦାମତା ମଧ୍ୟରେ ଉଚ୍ଛୁଳି ଉଠୁଥିଲା ପ୍ରେକ୍ଷାଳୟର ଭରପୂର ଦର୍ଶକ ଗ୍ୟାଲେରି । ରାତି ପ୍ରାୟ ଏଗାରଟା ସମୟକୁ ପ୍ରେକ୍ଷାଳୟରୁ ବାହାରି ଆସିଲାବେଳକୁ ମୁମ୍ବାଇର ପ୍ରବାସୀ ଓଡ଼ିଆ ଦର୍ଶକମାନଙ୍କ ମୁହଁରୁ ଝରି ପଡୁଥିଲା ଆତ୍ମୀୟତାଭରା ହସ, ଯେଉଁଥିରେ ଭରି ରହିଥିଲା ଓଡ଼ିଆ ପଣର ମିଠା ମିଠା ବାସ୍ନା । ଅବସର ଥିଲା, ମୁମ୍ବାଇଠାରେ ଅନୁଷ୍ଠିତ ଓଡ଼ିଆ ଚଳଚ୍ଚିତ୍ର ଏବଂ ସାଂସ୍କୃତିକ ମହୋତ୍ସବ ତଥା ଆନ୍ତଃରାଜ୍ୟ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମର ପ୍ରଥମ ରଜନୀ ।

ଓଡ଼ିଶାର କଳା, ସଂସ୍କୃତି, ଚଳଚ୍ଚିତ୍ର ତଥା ଓଡ଼ିଶାର ଲୋକକଳାର ପ୍ରଚାର ଏବଂ ପ୍ରସାର, ପ୍ରବାସୀ ଓଡ଼ିଆମାନଙ୍କୁ ରାଜ୍ୟର ସାଂସ୍କୃତିକ ପରମ୍ପରା ସହ ପରିଚିତ କରାଇବା ତଥା ପଡ଼ୋଶୀ ରାଜ୍ୟମାନଙ୍କ ସହ ସାଂସ୍କୃତିକ ବନ୍ଧନ ନିବିଡ଼ କରିବାର ଲକ୍ଷ୍ୟ ନେଇ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଆରମ୍ଭ କରାଯାଇଥିବା 'ଓଡ଼ିଆ ଚଳଚ୍ଚିତ୍ର ଏବଂ ସାଂସ୍କୃତିକ ମହୋତ୍ସବ' ପଦାର୍ପଣ କରିଛି ତୃତୀୟ ବର୍ଷରେ । ୨୦୦୩ ମସିହାରେ କେରଳର ଥିରୁବନନ୍ତପୁରମ୍, ୨୦୦୫ ମସିହାରେ ଗୋଆରେ ସଫଳତାର ସହ ଅନୁଷ୍ଠିତ ହେବା ପରେ ଚଳିତ ବର୍ଷ ଭାରତୀୟ ଚଳଚ୍ଚିତ୍ର ଶିଳ୍ପର ପ୍ରାଣକେନ୍ଦ୍ର ମୁମ୍ବାଇଠାରେ ଏହି ଚଳଚ୍ଚିତ୍ର ମହୋତ୍ସବର ପ୍ରଦର୍ଶନ ପାଇଁ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ କରାଯାଇଥିଲା ବ୍ୟାପକ ଆୟୋଜନ । ସୂଚନା ଓ ଲୋକ ସଂପର୍କ ଏବଂ କ୍ରୀଡ଼ା ତଥା ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟା, ବିଭାଗର କମିଶନର-ତଥା-ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି, ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତିଙ୍କ ଆନ୍ତରିକ ଉଦ୍ୟମ ଏହି ଉତ୍ସବର ସଫଳତାକୁ ଅନେକ ପରିମାଣରେ ପ୍ରଭାବିତ କରିଥିଲା ।

ଜାନୁଆରୀ ୧୬, ୧୭, ୧୮ ତାରିଖ ତିନି ଦିନ ଧରି ଅନୁଷ୍ଠିତ ଏହି ମହୋତ୍ସବକୁ ଉଦ୍‌ଘାଟନ କରି ମାନ୍ୟବର ଗ୍ରାମ୍ୟ ଉନ୍ନୟନ, ଶିଳ୍ପ ଓ ଆଇନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓଡ଼ିଶାର ଗୌରବମୟ ଐତିହ୍ୟ, କଳା, ସଂସ୍କୃତିର ପୁନରୁଦ୍ଧାର ପାଇଁ ସରକାରୀ କାର୍ଯ୍ୟକ୍ରମ ସହ ବ୍ୟକ୍ତିଗତ ସ୍ତରରେ ମଧ୍ୟ ଉଦ୍ୟମ ହେବା ଆବଶ୍ୟକ ବୋଲି ମତବ୍ୟକ୍ତ କରିଥିଲେ ।

ପ୍ରଥମ ଦିବସରେ ମହାରାଷ୍ଟ୍ରର ବିଧାୟକ ଶ୍ରୀ ଜଗନ୍ନାଥ ସେଠୀ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ଭବିଷ୍ୟତରେ ଏଭଳି କାର୍ଯ୍ୟକ୍ରମକୁ ଆହୁରି ବ୍ୟାପକ ଭାବରେ ଆୟୋଜନ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଦ୍ୱିତୀୟ ଦିବସରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ଓଡ଼ିଶାର ନଗର ଉନ୍ନୟନ ଏବଂ ସାଧାରଣ ଉଦ୍ୟୋଗ ବିଭାଗର ମନ୍ତ୍ରୀ ଶ୍ରୀ କନକ ବର୍ଦ୍ଧନ ସିଂହଦେଓ । ସେହିପରି ଶେଷ ରଜନୀରେ ରାଜ୍ୟ ସମବାୟ ମନ୍ତ୍ରୀ ସୁରମା ପାଢ଼ୀ ମୁଖ୍ୟ ଅତିଥି ଭାବେ ଏବଂ ସ୍ଥାନୀୟ ବିଧାୟକ ନୱାବ ମଲ୍ଲିକ ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ ।

ଏହି ମହୋତ୍ସବରେ ଅଧକ୍ଷତା କରି ସୂଚନା ଓ ଲୋକ ସଂପର୍କ ଏବଂ କ୍ରୀଡ଼ା ତଥା ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ କହିଥିଲେ, ଓଡ଼ିଶାର ସାଂସ୍କୃତିକ ପରମ୍ପରା ଐତିହ୍ୟ ଅତ୍ୟନ୍ତ ଗୌରବମୟ ଏବଂ ପ୍ରାଚୀନ । ବିଶ୍ୱ ସଂସ୍କୃତିକୁ ଆପଣେଇ ନେଲେ ମଧ ନିଜର ସାଂସ୍କୃତିକ ସ୍ୱାଭିମାନକୁ ବଞ୍ଚାଇ ରଖିବା ଦିଗରେ ଏହି ଚଳଚ୍ଚିତ୍ର ମହୋତ୍ସବ ଏକ କ୍ଷୁଦ୍ର ପ୍ରୟାସ । ନୂତନ ଶତାବ୍ଦୀରେ ଓଡ଼ିଶା ଆଜି କ୍ରୀଡ଼ା, ଶିକ୍ଷା, ଉଦ୍ୟୋଗ, ବାଣିଜ୍ୟ ପ୍ରତ୍ୟେକ କ୍ଷେତ୍ରରେ ଦ୍ରୁତ ଅଗ୍ରଗତି କରିଚାଲିଛି । ଓଡ଼ିଶାରେ ଗଚ୍ଛିତ ବିପୁଳ ଖଣିଜ ସମ୍ପଦ, ପର୍ଯ୍ୟଟନସ୍ଥଳୀ, ଆବଶ୍ୟକୀୟ ଭିତ୍ତିଭୂମି ଆଜି ବିଦେଶୀ ପୁଞ୍ଜି-ନିବେଶକାରୀମାନଙ୍କୁ ଓଡ଼ିଶାକୁ ଟାଣି ଆଣୁଛି । ତେଣୁ ନିଜ ଜନ୍ମମାଟିରୁ ଦୂରରେ ରହିଥିଲେ ମଧ ଓଡ଼ିଶାର ଏହି ଦ୍ରୁତ ବିକାଶରେ ସମସ୍ତେ ସାମିଲ ହେବା ସହ ଅକୁଣ୍ଠ ସହଯୋଗ କରିବା ହେଉଛି ବର୍ତ୍ତମାନ ସମୟର ଆବଶ୍ୟକତା । ସୂଚନା ଓ ଲୋକ ସଂପର୍କ ବିଭାଗର କମିଶନର-ତଥା-ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି ଏହି ଚଳଚ୍ଚିତ୍ର ଏବଂ ସାଂସ୍କୃତିକ ମହୋତ୍ସବର ଆଭିମୁଖ୍ୟ ଏବଂ ଉଦ୍ଦେଶ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି କାର୍ଯ୍ୟକ୍ରମର ସଫଳତା ପାଇଁ ମୁମ୍ବାଇର ପ୍ରବାସୀ ଓଡ଼ିଆମାନଙ୍କର ଅକୁଣ୍ଠ ସହଯୋଗ ଏବଂ ସମର୍ଥନ ପାଇଁ ଓଡ଼ିଶା ସରକାର ତଥା ଓଡ଼ିଶାର ଜନସାଧାରଣଙ୍କ ତରଫରୁ କୃତଜ୍ଞତା ଜ୍ଞାପନ କରିଥିଲେ । ବମ୍ବେ ଉତ୍କଳ ସମିତିର ସହଯୋଗରେ ଏହି ଉତ୍ସବ ଅନୁଷ୍ଠିତ ହୋଇଥିବାବେଳେ ଅନୁଷ୍ଠାନର ସଭାପତି ଶ୍ରୀ ବିପିନ ବିହାରୀ ମିଶ୍ର ମୁମ୍ବାଇର ପ୍ରବାସୀ ଓଡ଼ିଆମାନଙ୍କର ବହୁ ସଂଖ୍ୟାରେ ଯୋଗଦାନ ପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

ଏହି ଅବସରରେ ନିଜ ନିଜ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ଓଡ଼ିଶା ମାଟିର ଅନେକ ପ୍ରତିଷ୍ଠିତ ବ୍ୟକ୍ତିତ୍ୱଙ୍କୁ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ସମ୍ମାନିତ କରାଯାଇଥିଲା । ସେମାନଙ୍କ ମଧ୍ୟରେ ନିର୍ଦ୍ଦେଶକ ଶିଶିର ମିଶ୍ର, ପ୍ରଯୋଜକ ଲକ୍ଷ୍ମୀନାରାୟଣ ଅଗ୍ରୱାଲ, କଳା ସମୀକ୍ଷକ ଦିଲ୍ଲୀପ ହାଲି, ଅଭିନେତ୍ରୀ ଶିଳାଲିପି ପରିଡ଼ା, ଗାୟିକା ଲୋପିତା ମିଶ୍ର, ଶିଶୁ କଳାକାର ଯାଜ୍ଞସେନୀ ଜେନାଙ୍କ ସମେତ ଥିଲେ ମୁମ୍ବାଇର ଯୁଗ୍ମ ପୋଲିସ୍ କମିଶନର ଅରୂପ ପଟ୍ଟନାୟକ, ମହାରାଷ୍ଟ୍ର କ୍ୟାଡରର ଅବସରପ୍ରାପ୍ତ ଓଡ଼ିଆ ଆଇ.ଏ.ଏସ୍. ଅଫିସର୍ ଗୋପାଳଚନ୍ଦ୍ର ତ୍ରିପାଠୀ, ବମ୍ବେ ପୋର୍ଟ ଟ୍ରଷ୍ଟର ଡେପୁଟୀ ଚେୟାରମ୍ୟାନ ଅଶୋକ ବଳ, କ୍ୟାମେରାମ୍ୟାନ ଶ୍ରୀନିବାସ ମହାପାତ୍ର, ଓଡ଼ିଶୀ ନୃତ୍ୟଗୁରୁ ରବୀନ୍ଦ୍ର ଅତିବୁଦ୍ଧି, ଏସିଆନ୍ ହାର୍ଟ ଇନ୍‌ଷ୍ଟିଚ୍ୟୁଟ୍‌ର ଡକ୍ଟର ଶୁଭ୍ରାଂଶୁ ମହାନ୍ତି ଏବଂ ବହୁ ସ୍ଥାନୀୟ ଓଡ଼ିଆ ବ୍ୟକ୍ତିତ୍ୱ ।

ତେବେ ଏହି ଚଳଚ୍ଚିତ୍ର ମହୋତ୍ସବର ସବୁଠାରୁ ଆକର୍ଷଣୀୟ ଦିଗଟି ଥିଲା ଓଡ଼ିଶାର ବିଭିନ୍ନ ଜିଲ୍ଲାର ଲୋକପ୍ରିୟ ନୃତ୍ୟକଳାର ମସୃଣ ମିଶ୍ରଣରେ ପ୍ରସ୍ତୁତ ଚିତ୍ତାକର୍ଷକ ସାଂସ୍କୃତିକ କାର୍ଯ୍ୟକ୍ରମ । ଓଡ଼ିଶାର ବିଭିନ୍ନ ଦେବମନ୍ଦିର ତଥା କୋଣାର୍କ ମନ୍ଦିର ଗାତ୍ରର ପଥର ଖୋଦେଇ କାରୁକାର୍ଯ୍ୟକୁ ଆଧାର କରି ପ୍ରସ୍ତୁତ ମଞ୍ଚ ପୃଷ୍ଠଭୂମିରେ ଓଡ଼ିଶା ଡ୍ୟାନ୍ସ ଏକାଡେମୀର ଶିଳ୍ପୀମାନଙ୍କ ଦ୍ୱାରା ପ୍ରସ୍ତୁତ 'ମାନମୟୀ ରାଧିକା' ଥିଲା ଯେତିକି ହୃଦୟସ୍ପର୍ଶୀ, ସଂଗୀତ କଳା ସଂସଦ ଚୌଦ୍ୱାରର କଳାକାରମାନଙ୍କ ଦ୍ୱାରା ପ୍ରସ୍ତୁତ ଚଇତିଘୋଡ଼ା ନାଚ, ଭବାନୀପାଟଣାର ମହାବୀର ସାଂସ୍କୃତିକ ପରିଷଦ ତରଫରୁ ପ୍ରସ୍ତୁତ ଘୁମୁରା ନାଚ ଦର୍ଶକମାନଙ୍କୁ କରିଥିଲା ସେତିକି ଆମୋଦିତ । ଏକକ ଓଡ଼ିଶୀ ନୃତ୍ୟକ୍ରମରେ ବିଶିଷ୍ଟ ଓଡ଼ିଶୀ ନୃତ୍ୟଶିଳ୍ପୀ ପୁଷ୍ପିତା ମିଶ୍ର ଏବଂ ମଧୁବ୍ରତା ଶତପଥୀ ଭିନ୍ନ ଭିନ୍ନ ଦିନମାନଙ୍କରେ ପରିବେଷଣ କରିଥିଲେ ଦେବୀନୃତ୍ୟ ଏବଂ ଯୁଗଳବନ୍ଦୀ । ତେବେ ଦଶଭୁଜା ଗୋଟିପୁଅ ନୃତ୍ୟ ପରିଷଦ, ରଘୁରାଜପୁରର କଳାକାରମାନଙ୍କ ଦ୍ୱାରା ପରିବେଷିତ ଚମତ୍କାର ଗୋଟିପୁଅ ନୃତ୍ୟ ହିଁ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରିଥିଲା ଏବଂ ଉଚ୍ଚପ୍ରଶଂସିତ ହୋଇଥିଲା । ସମସ୍ତ କାର୍ଯ୍ୟକ୍ରମର ସଂଯୋଜନା ଏବଂ ଉପସ୍ଥାପନା ଅତ୍ୟନ୍ତ ଉଚ୍ଚକୋଟୀର ହୋଇଥିଲା, ଯେଉଁଥିରୁ ଓଡ଼ିଶାର କଳା, ସଂସ୍କୃତି ଏବଂ ପରମ୍ପରାର ସ୍ପଷ୍ଟ ଝଲକ ବାରି ହୋଇ ପଡୁଥିଲା ।

ମୁମ୍ବାଇ ଭଳି ଏକ ବ୍ୟସ୍ତ ମହାନଗରୀରେ ଜୀବିକା ଏବଂ ଜୀବନର ଦୌଡ଼ ଭିତରେ ଅଣନିଃଶ୍ୱାସୀ ହୋଇ ନିଜ ରାଜ୍ୟଠାରୁ ଅନେକ ଦୂରରେ ରହୁଥିବା ଓଡ଼ିଆମାନଙ୍କ ପାଇଁ ଏ ଥିଲା ଏକ ସମ୍ପୂର୍ଣ୍ଣ ଆତ୍ମୀୟତାଭରା ବାତାବରଣ । ଦୂରଦୂରାନ୍ତରୁ ବହୁ ସଂଖ୍ୟାରେ ଦରଦୀ ଓଡ଼ିଆ ବନ୍ଧୁ ଏହି କାର୍ଯ୍ୟକ୍ରମ ଦେଖିବା ପାଇଁ ଏକତ୍ରିତ ହୋଇଥିଲେ ରଙ୍ଗଶାରଦା ଅଡ଼ିଟୋରିଅମ୍‌ରେ ଏବଂ ସୂଚନା ଓ ଲୋକ ସଂପର୍କ ବିଭାଗର ଏହି ଉଦ୍ୟମକୁ ସାଧୁବାଦ ଜଣାଇଥିଲେ । ସାଂସ୍କୃତିକ ବିନିମୟ ଦିଗରେ ସୂଚନା ଓ ଲୋକ ସଂପର୍କ ବିଭାଗର ଏହି ନିଆରା ପଦକ୍ଷେପ ବାସ୍ତବିକ ପ୍ରଶଂସନୀୟ ଏବଂ ଭବିଷ୍ୟତରେ ମଧ ଏହି ମହୋତ୍ସବ ଆହୁରି ସୁଦୂରପ୍ରସାରୀ ଏବଂ ସଫଳତାର ସହ ପାଳନ କରାଯିବ ବୋଲି ବିଶ୍ୱାସ କରାଯାଏ ।

ପ୍ଲଟ ନଂ-୨୩୦ (ପାର୍ଟ)
ଶାସ୍ତ୍ରୀ ନଗର, ଭୁବନେଶ୍ୱର

# ଭାରତରେ ହୃଦରୋଗ ନିରାକରଣର ଆବଶ୍ୟକତା

ମୂଳ ଇଂରାଜୀ : ଡଃ ଭି.ଜେ. ସାଧନା
ଅନୁବାଦ : ହେମନ୍ତ କୁମାର ନାୟକ

**ବି**ଶ୍ୱ ସ୍ୱାସ୍ଥ୍ୟ ସଂଗଠନର ଅଟକଳ ଅନୁଯାୟୀ ଭାରତରେ ୨୦୧୦ ମସିହା ସୁଦ୍ଧା ବିଶ୍ୱ ହୃଦରୋଗର ଶତକଡ଼ା ୬୦ ଭାଗ ମାମଲା ଦେଖାଦେବ । ଏହା ଉଭୟ ପୁରୁଷ ଓ ମହିଳାଙ୍କ ନିମନ୍ତେ ଏକ ନମ୍ବର ନିଧନକାରୀ ରୋଗ ଅଟେ । ଅଟକଳର ପରାମର୍ଶ ଅନୁଯାୟୀ ଭାରତରେ ଏହି ରୋଗ ୧.୭ ନିୟୁତ ମହିଳା ଏବଂ ୨ ନିୟୁତ ପୁରୁଷ ଏହି ବର୍ଷ ସୁଦ୍ଧା ନିଧନ କରିବ ।

ହୃଦରୋଗରେ ଆକ୍ରାନ୍ତ ଶତକଡ଼ା ୫୦ ଭାଗ ଲୋକଙ୍କର ହୃଦଘାତ ପ୍ରାଥମିକ ଲକ୍ଷଣ ଅଟେ । ଦୁର୍ଭାଗ୍ୟବଶତଃ ହୃଦଘାତ ହେଉଥିବା ଲୋକଙ୍କ ମଧ୍ୟରୁ ଶତକଡ଼ା ୫୦ ଭାଗ ମୃତ୍ୟୁବରଣ କରିଥାନ୍ତି । ଅବଶିଷ୍ଟ ହୃଦରୋଗୀ ସାରା ଜୀବନ ଔଷଧ ସେବନ କରିଥାନ୍ତି ଏବଂ ସେମାନଙ୍କ ମଧ୍ୟରୁ କେତେକ ଶଲ୍ୟ ଚିକିତ୍ସାଗତ ମଧ୍ୟକ୍ଷେପ ଯେପରିକି ଏଞ୍ଜିଓପ୍ଲାଷ୍ଟି ବା ରକ୍ତଧମନୀର ଶଲ୍ୟ ଚିକିତ୍ସା କିମ୍ବା ବାଇପାସ୍ ସର୍ଜରୀ ବା ବାହ୍ୟପଥ ଶଲ୍ୟ ଚିକିତ୍ସା କରାଇଥାନ୍ତି । ହୃଦ୍‌ଘାତଜନିତ ଅକସ୍ମାତ ମୃତ୍ୟୁମୁଖରୁ ରକ୍ଷା ପାଇବା ପାଇଁ ପ୍ରଥମରୁ ଏହାର ସନ୍ଧାନର ଗୁରୁତ୍ୱ ଉପଲବ୍ଧି କରାଯାଏ । ଏହି ରୋଗ ନିଦାନର ବିଭିନ୍ନ ପରୀକ୍ଷା ଲଭ୍ୟ ହୋଇଥାଏ କିନ୍ତୁ ସେମାନଙ୍କ ମଧ୍ୟରୁ ଛାତିର ଯନ୍ତ୍ରଣା ଥରୁଟିଏ ହୋଇଯିବା ଅବଶ୍ୟ ଗୋଟାଏ ନୁହେଁ ।

## ହୃଦରୋଗର ବିଦ୍ୟା ବା ଶାଖା ସମୂହ

୧. **ମଧ୍ୟକ୍ଷେପ ହୃଦରୋଗ ଚିକିତ୍ସା** (ଇଣ୍ଟରଭେନ୍‌ସନାଲ କାର୍ଡ଼ିଓଲୋଜି) - ଏହି ବିଦ୍ୟା ବା ଶାଖା ରକ୍ତଧମନୀରେ ଶଲ୍ୟ ଚିକିତ୍ସା ରୋଗନିଦାନର ପରୀକ୍ଷା ଏବଂ ରକ୍ତ ଧମନୀରେ ରକ୍ତ ପ୍ରବାହ ବୃଦ୍ଧି ନିମନ୍ତେ ପ୍ରୟାସ ବା ଏଞ୍ଜିଓପ୍ଲାଷ୍ଟି ଏବଂ ଶଲ୍ୟ ଚିକିତ୍ସା ସୀମିତ କରିବା ନିମନ୍ତେ ବ୍ୟବହୃତ ହୋଇଥାଏ ।

୨. **ଚିକିତ୍ସାଗତ କିମ୍ବା ଆକ୍ରମଣ ବିନା ହୃଦରୋଗ ଚିକିତ୍ସା** - ଏହା ହୃଦରୋଗ ହୋଇଥିବା ବ୍ୟକ୍ତିର ଚିକିତ୍ସା ପରିଚାଳନା ନିମନ୍ତେ ବ୍ୟବହାର ହୁଏ ।

୩. **ପ୍ରତିରୋଧାତ୍ମକ ହୃଦରୋଗ ଚିକିତ୍ସା** - ଏହି ଶାଖା ସମୁଦାୟ ଜନସମାଜର ୩୫ ବର୍ଷରୁ ଅଧିକ ହୋଇଥିବା ପୁରୁଷ, ୪୫ ବର୍ଷରୁ ଊର୍ଦ୍ଧ୍ୱ ମହିଳା, ବହୁମୂତ୍ରୀ ବ୍ୟକ୍ତି ସମୂହ, ଉଚ୍ଚ ରକ୍ତଚାପ ରୋଗୀ, ଧୂମ୍ରପାନ ବ୍ୟକ୍ତି ଏବଂ ଯେଉଁମାନଙ୍କର ଅଧିକ ମେଦ ବୃଦ୍ଧି ହୋଇଥାଏ, ସେହିମାନଙ୍କର ଚିକିତ୍ସାରେ ଉପଯୋଗ କରାଯାଇଥାଏ । ଏହି ଚିକିତ୍ସାର ତିନିଗୋଟି ସ୍ତର ରହିଛି -

କ. **ପ୍ରାଥମିକ ସ୍ତର** - ଏହି ସ୍ତରରେ ରୋଗ ଆକ୍ରମଣ କରିବା ପୂର୍ବରୁ ସମସ୍ତ ବିପଦକୁ ନିୟନ୍ତ୍ରଣ କରାଯାଇଥାଏ ।

ଖ. **ମାଧ୍ୟମିକ ବା ମଧ୍ୟମ ସ୍ତର** - ଏହି ସ୍ତରରେ ହୃଦରୋଗକୁ ସନ୍ଧାନ ବା ପରୀକ୍ଷା କରାଯାଇ ଖୋଜି ବାହାର କରାଯାଏ ଏବଂ ହୃଦଘାତର ନିବାରଣ କରାଯାଇଥାଏ ।

ଗ. **ତୃତୀୟ ସ୍ତର ନିରାକରଣ** - ଏହି ସ୍ତରରେ ଯେଉଁ ବ୍ୟକ୍ତିଙ୍କୁ ଥରେ ହୃଦଘାତ ହୋଇଥାଏ କିମ୍ବା ତାଙ୍କର ଏଞ୍ଜିଓପ୍ଲାଷ୍ଟି ବା ବାଇପାସ୍ ସର୍ଜରୀ ହୋଇଥାଏ, ତାଙ୍କୁ ପୁନର୍ବାର ହୃଦଘାତ ନହେବା ନିଶ୍ଚିତ କରିଥାଏ ।

ଏହି ତିନିଗୋଟି ଚିକିତ୍ସା ସ୍ତରରେ ସମନ୍ୱୟ ରକ୍ଷା କରାଯାଇ ହୃଦରୋଗର ପ୍ରାଥମିକ ଅନୁସନ୍ଧାନ ଏବଂ ଅକସ୍ମାତ୍ ହୃଦଘାତ ଦ୍ୱାରା ମୃତ୍ୟୁ ମୁଖରୁ ବଞ୍ଚାଇବା ପାଇଁ ହୃଦରୋଗ ଚିକିତ୍ସା ପ୍ରମୁଖ କାର୍ଯ୍ୟ କରିଥାଏ ।

## ସ୍ୱାସ୍ଥ୍ୟବାନ୍ ବ୍ୟକ୍ତିର ହୃଦରୋଗ ଅନୁସନ୍ଧାନରେ ପଦ୍ଧତି

୧. **ଇ.ସି.ଜି** - ଏହା ହୃଦୟର କ୍ରିୟାଶୀଳତା ଧ୍ୱନୀଲେଖନ (ରେକର୍ଡ଼ିଂ) କରିବାର ଏକ ବୈଦ୍ୟୁତିକ ପ୍ରଣାଳୀ । ଯଦି ହୃଦୟର ମାଂସପେଶୀରେ କମ୍ ରକ୍ତ ପ୍ରବାହ ଯୋଗୁଁ କିଛି କ୍ଷତି ହୋଇଥାଏ, ତେବେ ଇ.ସି.ଜି. ଅସ୍ୱାଭାବିକ ଦୃଶ୍ୟ ହୋଇଥାଏ । ସ୍ୱାଭାବିକ ଇ.ସି.ଜି. ହୃଦରୋଗ ସମ୍ଭାବନାକୁ ଅଗ୍ରାହ୍ୟ କରିଥାଏ ।

୨. **ଷ୍ଟ୍ରେସ୍ ଇ.ସି.ଜି.** - ଯେତେବେଳେ ମଣିଷ ଚାପର ବଶବର୍ତ୍ତୀ ହୋଇ ପେଷି ହୋଇ ଚାଲେ, ତା'ପରେ ଇ.ସି.ଜି. କରାଯାଇଥାଏ । ଇ.ସି.ଜି.ରେ ଅସ୍ୱାଭାବିକତା ପରିଲକ୍ଷିତ ହେଲେ ପରୀକ୍ଷାଟି ଅନୁକୂଳ

ବା ପଜିଟିଭ୍ ହୋଇଥାଏ । ଏହି ପରୀକ୍ଷଣରେ ଫଲ୍ସ ପଜିଟିଭ୍ କିମ୍ବା ଫଲ୍ସ୍ ନେଗେଟିଭ୍ ସମ୍ଭାବନା ଥାଏ ।

୩. **ଥ୍ରୀଡି କାର୍ଡ଼ିଓଭାସ୍କୋଲାର କାର୍ଟୋଗ୍ରାଫି** - ଏହି ପଦ୍ଧତିଟି ସବୁଠାରୁ ଉତ୍ତମ ସୁସଂସ୍କାର (ସୋଫିଷ୍ଟିକେଟେଡ୍) ପ୍ରୟୋଗ କୌଶଳ, ଯେଉଁଥିରେ ଅବରୋଧ ଦ୍ୱାରା ରକ୍ତ ପ୍ରବାହ ହ୍ରାସ ହୋଇଥାଏ, ତାହାର ଅନୁସନ୍ଧାନ କରାଯାଇଥାଏ । ଛାତିର ଯନ୍ତ୍ରଣା ଲକ୍ଷଣ, କଣ୍ଠ ପୋଡ଼ିବା କିମ୍ବା ରକ୍ତ ପ୍ରବାହ ହ୍ରାସ ଯୋଗୁଁ ହୃଦଘାତ ଅନ୍ୟତମ । ଥ୍ରୀଡି ଇ.ସି.ଜି. ଶରୀରର ବିଭିନ୍ନ ଇଲାକାରେ ଶତକଡ଼ା କେତେ ରକ୍ତ ପ୍ରବାହ ହେଉଛି, ତାହାର ନିରୂପଣ କରିଥାଏ ।

ଯେତେବେଳେ ସାମାନ୍ୟ ଅବରୋଧର (ମାଇଲ୍ଡ ବ୍ଲକେଜ୍) ଅନୁସନ୍ଧାନ କରାଯାଇଥାଏ, ସେତେବେଳେ ଶରୀରର ମେଦବୃଦ୍ଧି ହ୍ରାସ ଓ ଧୂମ୍ରପାନ ବନ୍ଦ ଏବଂ ଆସ୍‌ପିରିନ୍ ଓ ନିର୍ଦ୍ଦିଷ୍ଟ ଭିଟାମିନ୍ ବ୍ୟବହାର ନିମନ୍ତେ ସୁପାରିଶ କରାଯାଏ । ଅନ୍ୟାନ୍ୟ ଜୀବନୀ ଶୈଳୀ ଯେପରିକି ପୁଷ୍ଟିକରଣର ମାର୍ଜନା, ଚାପର ନିୟନ୍ତ୍ରିକରଣ ଏବଂ ବ୍ୟାୟାମ୍ ଅଭ୍ୟାସ କରିବା ନିମନ୍ତେ ପରାମର୍ଶ ଦିଆଯାଏ । ଆମ୍ଭେ ଏହିସବୁ ଜିନିଷ କରିବା ପରେ ଯଦି ନିଶ୍ଚିତ ହେବା ଯେ ବ୍ୟକ୍ତିର ଅବରୋଧର ବିକାଶ ହୋଇଛି, ହୃଦୟକୁ ରକ୍ତ ପ୍ରବାହର ଉନ୍ନତି ହୋଇଛି ଏବଂ ତା'ପରେ ଏହା ନିଶ୍ଚିତ ହେବ ଯେ, ବ୍ୟକ୍ତିଜଣକ ହୃଦଘାତରେ ଆକ୍ରାନ୍ତ ନୁହନ୍ତି ।

ଦୁର୍ଭାଗ୍ୟବଶତଃ, କେତେକ ସ୍ୱଳ୍ପ ଅଭିଜ୍ଞ ହୃଦରୋଗ ଚିକିତ୍ସାବିତ୍‌ଙ୍କର ପ୍ରାରମ୍ଭିକ ଅନୁସନ୍ଧାନ ଓ ନିରାକରଣର ପ୍ରଚଳିତ କୌଶଳ ମନୋବୃତ୍ତିର ଅସମାନତା ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ପରିଲକ୍ଷିତ ହୋଇଥାଏ । ଭାରତ ଭଳି ଏକ ବିଶାଳ ଦେଶର ଏହି ରୋଗର ବୋଝକୁ ଦୂର କରିବା ପାଇଁ ଏଞ୍ଜିଓପ୍ଲାଷ୍ଟି ଓ ବାଇପାସ୍ ସର୍ଜରୀ ଭଳି ଚିକିତ୍ସା ଉପଯୁକ୍ତ ନହୋଇ ଏକ ନୂତନ କୌଶଳର ଆବଶ୍ୟକତା ରହିଛି । ପ୍ରତିରୋଧାତ୍ମକ (ପ୍ରିଭେଣ୍ଟିଭ୍) ହୃଦରୋଗ ଚିକିତ୍ସାର ଆବଶ୍ୟକତା ସର୍ବାଦୌ ବାଞ୍ଛନୀୟ । ସମସ୍ତ ବୃତ୍ତିଧାରୀ ଚିକିତ୍ସକମାନେ ସ୍ୱାସ୍ଥ୍ୟ ବିଦ୍ୟା ସହିତ ସଂଶ୍ଳିଷ୍ଟ ହେବା ସହ ପ୍ରାଥମିକ ଅନୁସନ୍ଧାନ ଶୈଳୀ, ଜୀବନଶୈଳୀର ମାର୍ଜନା ଏବଂ ହୃଦରୋଗର ପ୍ରତିରୋଧାତ୍ମକ ଔଷଧ ଉପଚାର ଉପରେ ଗୁରୁତ୍ୱ ଦେବା ଉଚିତ୍ ।

ଆମ୍ଭେ ପ୍ରାଥମିକ ସ୍ତରରେ ହୃଦରୋଗର ଅନୁସନ୍ଧାନ କରି ସତର୍କତା ଅବଲମ୍ବନ କରିବା କିମ୍ବା ହୃଦଘାତ ହେବା ପର୍ଯ୍ୟନ୍ତ ଅପେକ୍ଷା କରି କହିବା ଯେ, ଆମ୍ଭର ହୃଦରୋଗ ହୋଇଛି, ଏହି ପସନ୍ଦ ନିଜ ନିଜର ।

ହୃଦୟ ନିଜସ୍ୱ .... ଏହାର ସୁରକ୍ଷା ନିମନ୍ତେ ଶିକ୍ଷାର ଆବଶ୍ୟକତା ରହିଛି ।

ଏମ୍.ଆଇ.ଜି.-୨୭୩/୧
ହାଉସିଂବୋର୍ଡ଼, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର-୯



ଗୋପ ବ୍ଲକ୍‌ର ସ୍ୱୟଂସହାୟକ ଗୋଷ୍ଠୀ ସଞ୍ଚୟିକା ସଂଘର 'ଶକ୍ତିରୂପା' ବାଣିଜ୍ୟ ପ୍ରତିଷ୍ଠାନର ୧୦.୧୨.୦୫ରେ କୋଣାର୍କଠାରେ ଶୁଭ ଉଦ୍‌ଘାଟନ କରି ମିଶନ ଶକ୍ତି କାର୍ଯ୍ୟକ୍ରମରେ ମହିଳାମାନଙ୍କର ଏସ୍.ଏଚ୍.ଜି.ର ଉତ୍ପାଦିତ ସାମଗ୍ରୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବୁଲି ଦେଖୁଛନ୍ତି ।

# ଶ୍ରୀଜଗନ୍ନାଥ ଓ ଦୋଳ ଉତ୍ସବ

ବୈକୁଣ୍ଠ ମହାପାତ୍ର

ଓଡ଼ିଶାର ଧର୍ମ ଜଗନ୍ନାଥ ଧର୍ମ ବୋଲି କୁହାଯାଏ । ଜଗନ୍ନାଥ ଧର୍ମ ନକହି ସଂସ୍କୃତି ବୋଲି ଅଭିହିତ କଲେ ଅଧିକ ସମୀଚିନ ହେବ । ତିନୋଟି ଧର୍ମର ଦେବତାଙ୍କୁ ଏକତ୍ର କରି ଯେଉଁ ସଂସ୍କୃତି ମୁଣ୍ଡ ଟେକି ଉଠିଲା, ତାହା ଜଗନ୍ନାଥ ସଂସ୍କୃତି । ପ୍ରତ୍ୟେକ ଧର୍ମର ଇଷ୍ଟ- ବ୍ରହ୍ମା ।

କୃଷ୍ଣ ହିଁ ପରମ ବ୍ରହ୍ମ, ପରତତ୍ତ୍ୱ ସର୍ବ କାରଣର କାରଣ । ଜଗନ୍ନାଥ ତତ୍ତ୍ୱ, ଜଗନ୍ନାଥଙ୍କ ସ୍ଥିତି ସମ୍ବନ୍ଧରେ ବ୍ରହ୍ମ ପୁରାଣରେ କଥିତ ଅଛି -

ଜଗନ୍ନାଥ :

‘ଦ୍ୱିତୀୟ ପୁଣ୍ଡରୀକାକ୍ଷ ନିଳ ଜିମୁତ ସନିଭଂ
ଅତସୀ ପୁଷ୍ପ ସକାଶଂ ପଦ୍ମ ପତ୍ରେ ୟେତେକ୍ଷଣମ୍
ପୀତବାସ ସତ ତୁଗ୍ରଂ ଶୁଭଶ୍ରୀ ବସ୍ତ୍ର ଲକ୍ଷଣମ୍
ଚକ୍ରପୂର୍ଣ୍ଣ କରଂ ବିଦ୍ୟ ସର୍ବ ପାପ ହରହରି ।’

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସାମ୍ୟ ମୈତ୍ରୀ ହିଁ ଜଗନ୍ନାଥ ସଂସ୍କୃତି । ତେଣୁ ଲୋକନାଥ ବିଦ୍ୟାଧର ସ୍ୱରଚିତ ଗ୍ରନ୍ଥ ନୀଳାଦ୍ରି ମହୋଦୟରେ ‘ଦୋଳ ଉତ୍ସବ’ର ବର୍ଣ୍ଣନାକରି ଛୁଆଁ-ଅଛୁଆଁ, ଉଚ୍ଚ-ନୀଚ ଭେଦଭାବ ନ ରଖି ତାଙ୍କୁ ସମସ୍ତେ ଏକତ୍ର ଦର୍ଶନ କରନ୍ତି । ଦୋଳେଶ୍ୱ ଦୋଳ ଗୋବିନ୍ଦ ।

ଦୋଳପର୍ବର ପ୍ରାଚୀନତା ସଂପର୍କରେ ପଦ୍ମପୁରାଣ, ସ୍କନ୍ଦ ପୁରାଣ, ହରିଭକ୍ତ ବିଳାସ, ବ୍ରହ୍ମାଣ୍ଡ ପୁରାଣ, ଗୋପାଳ ଓଗାଳ, ଋତୁ ସଂହାର, ନିଳାଦ୍ରୀ ଅର୍ଜନ ଚନ୍ଦ୍ରକାୟାଂ, ଲିଙ୍ଗପୁରାଣ, ଶତାନନ୍ଦ ସଂଗ୍ରହରେ ଅନଙ୍ଗୋତ୍ସବ ବା ଦୋଳୋତ୍ସବ କଥା ବର୍ଣ୍ଣିତ ହୋଇଛି ।

ଫାଲଗୁନ ମାସ ଅମାବାସ୍ୟାଠାରୁ ଚୈତ୍ରମାସ ବା ମଧୁମାସର ପ୍ରାରମ୍ଭ । ଫାଲଗୁନ ମାସ ପୂର୍ଣ୍ଣିମାର ଦୋଳ ଉତ୍ସବ ପ୍ରକୃତି ଓ ପୁରୁଷର ମିଳନାତ୍ମକ ବାସନ୍ତିକ ରାସୋତ୍ସବର ପ୍ରତୀକ । ଦୋଳଯାତ୍ରା ଓଡ଼ିଶାର ପୁରପଲ୍ଲୀରେ ରାଜଦୋଳ, ପଞ୍ଚୁଦୋଳ, ଛ’ଦୋଳ, ସାତଦୋଳ, ନଅଦୋଳ, ଦଶଦୋଳ ଇତ୍ୟାଦି ଫାଲଗୁନ ମାସ ପୂର୍ଣ୍ଣିମାଠାରୁ ପାଞ୍ଚ ଦିନ ବା ଯେତେ ଦିନ ଅବଧି ପାଳନ କରାଯାଇଥାଏ, ସେହି ଅନୁଯାୟୀ ଦୋଳକୁ ନାମିତ କରାଯାଇଥାଏ । ଫଗୁଦଶମୀଠାରୁ ଦୋଳପର୍ବ ଆରମ୍ଭ ହୁଏ । ଦଶମୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ରାଜ ଦୋଳ, ପୂର୍ଣ୍ଣମୀଠାରୁ ବାରୁଣୀ ସ୍ନାନ ପର୍ଯ୍ୟନ୍ତ ବା ଯେତେ ଦିନ ଦୋଳ ପାଳନ କରାଯାଏ, ସେ ପ୍ରକାର ନାମ ରଖାଯାଇଥାଏ ।

ଦୋଳ ଯାତ୍ରା ସଂସ୍କୃତରେ ‘ଚର୍ଚ୍ଚରୀ’ ବା ‘ଚାଚେରୀ’ ନାମରେ ଅଭିହିତ । ତେଣୁ ଓଡ଼ିଶାରେ ସର୍ବତ୍ର ରାଧାକୃଷ୍ଣ, ଶିବ ପାର୍ବତୀ, ଲକ୍ଷ୍ମୀନାରାୟଣ, ଯୁଗଳ ମୂର୍ତ୍ତିର ବାସନ୍ତିକ ଦୋଳ ଉତ୍ସବ ପାଳନ ହୋଇଥାଏ । ମଥୁରା, ବୃନ୍ଦାବନ, ଦ୍ୱାରକାରେ ରାଧାକୃଷ୍ଣଙ୍କ ଲୀଳାର ଅନୁପମ ରାସସ୍ଥଳୀରେ ଦୋଳ, ହୋଲି ପାଳିତ ହୁଏ । ଶ୍ରୀରାଧାଙ୍କ ହଜି ଯାଇଥିବା କର୍ଣ୍ଣାଳଙ୍କାର ଖୋଜିବା ମଧରେ ମିଳନ ଉତ୍ସବର ଆରମ୍ଭ । ଫାଲଗୁନ ମାସ ପୂର୍ଣ୍ଣିମା ତିଥିରେ ବ୍ରଜ ଗୋପାଳଗଣମାନେ ଗୋମାତାଙ୍କ ଜନ୍ମ ଉତ୍ସବ ଘରେ ଘରେ ମହା ଆନନ୍ଦ ସହକାରେ ପାଳନ କରି ଗୋମାତାଙ୍କୁ ବନ୍ଦାପନା କରନ୍ତି ।

ଦୋଳପର୍ବ ଓଡ଼ିଶାର ଜନମାନସର ପର୍ବ । ଦୋଳପର୍ବରେ ଗୋପାଙ୍ଗନାମାନେ ତାଙ୍କ ପ୍ରିୟତମ ଶ୍ରୀକୃଷ୍ଣଙ୍କ ସହିତ ଚାଚେରୀ ଖେଳି ବାହାରନ୍ତି । ଗାଁଗହଳି ଦାଣ୍ଡମାନଙ୍କରେ ମେଳନ ହୁଏ । ଠାକୁରମାନଙ୍କୁ ବ୍ରାହ୍ମ ମୁହୂର୍ତ୍ତରେ ବିମାନରେ ବସାଇ ଖୋଳ, ତାଳ, ମଶାଲ, ଛତିତ୍ରାସ, ସଂକୀର୍ତ୍ତନ ସହ ମେଳନ ପଡ଼ିଆକୁ ଆଣନ୍ତି । ଠାକୁରମାନଙ୍କୁ ନାନା ସୁଗନ୍ଧ ପୁଷ୍ପ, କେତକୀ ଓ ନୂଆ ଆମ୍ବକଷିମାନ ଲାଗି କରାଯାଏ । ଠାକୁରଙ୍କ ଆଗମନ ପଥରେ ଭକ୍ତମାନଙ୍କର ଓ ଗାଁ ଲୋକଙ୍କ ନିମନ୍ତ୍ରଣ କ୍ରମେ ଠାକୁରଙ୍କୁ ପକ୍ତିଭୋଗ ଦିଆଯାଇଥାଏ । ଏହି ମିଳନ ସାରାଦିନ ଚାଲେ ।

ଓଡ଼ିଶାର ରାଷ୍ଟ୍ର ଦେବତା ଶ୍ରୀଜଗନ୍ନାଥ, ପ୍ରତ୍ୟେକ ପର୍ବପର୍ବାଣୀ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରରୁ ବ୍ୟାପ୍ତ । ଶ୍ରୀଜଗନ୍ନାଥଙ୍କ ଫାଲଗୁନ ମାସର ଉତ୍ସବ (ଫଲଗୁ ଉତ୍ସବ) ଦ୍ୱାରକାଲୀଳା ମତେ ଅନୁଷ୍ଠିତ ହୁଏ । ଦଶମୀ ଦିନ ମଧ୍ୟାହ୍ନ ଧୂପ ପରେ ସେବକମାନଙ୍କ ହସ୍ତରେ ବିଜେ ହୋଇ ବଟମୂଳରେ ଥିବା ବିମାନରେ ଉପବେଶନ ହୋଇ ଘଣ୍ଟ, କାହାଳୀ ସହ ସିଂହଦ୍ୱାର ଦେଇ ଶ୍ରୀଜଗନ୍ନାଥଙ୍କ ବସନ୍ତ ଉତ୍ସବ ଜଗନ୍ନାଥ

ବଲ୍ଲଭକୁ ବିଜେ କରନ୍ତି । ତାଙ୍କ ସହିତ ପାଞ୍ଚଟି ବିମାନରେ ପଞ୍ଚୁପାଣ୍ଡବ, ଜମ୍ବେଶ୍ୱର, କପାଳମୋଚନ, ଲୋକନାଥ, ମାର୍କଣ୍ଡେୟ, ନୀଳକଣ୍ଠ ଯାଇଥାନ୍ତି । ସେଠାରେ ଆଳତୀ ପରେ ଶ୍ରୀମନ୍ଦିର ପାଖ ଦୋଳବେଦୀ ପାଖକୁ ଆସି ଶ୍ରୀମନ୍ଦିର ସହ ଦୋଳବେଦୀ ଚାରିପାଖକୁ ସାତଥର ପରିକ୍ରମା ପରେ ଦକ୍ଷିଣାମୁଖୀ ହୋଇ ଦୋଳିରେ ବିଜେ କରନ୍ତି ।

ଏବେ ଶୁଣ ଜନମାନେ ଦୋଳକଥା - ଯାହା ଶୁଣି ନାଶ ଯିବ ଭବବ୍ୟଥା

ଏବେ ଶୁଣ ଜନମାନେ ଏ ରସ - ଦୋଳ ମହୋତ୍ସବ ବିଧି ପ୍ରକାଶ

ଦନ୍ତୀ ଦନ୍ତ ଖଟ ଦୋଳି ଉପରେ - ଗୋବିନ୍ଦ ବିଜେ କରନ୍ତି ସଧିରସେ

ପ୍ରଥମ ଦୋଳ ବ୍ରସନ ଯେ, ନିମିତ୍ତର ନାନା ବର୍ଣ୍ଣରେ ଆଣନ୍ତି ଅପାର ପ୍ରକାର ଜନ ଯେ (୧)

ନୀଳାଦ୍ରୀ ମହୋଦୟ

ଏହି ଦୋଳବେଦୀରେ ପ୍ରଭୁଙ୍କୁ ଦର୍ଶନ କଲେ ମହାଭାଗ୍ୟ ପୁଣ୍ୟ ମିଳେ ବୋଲି ବର୍ଣ୍ଣିତ ଅଛି । ଦୋଳବେଦୀରେ ନୂତନ ପଞ୍ଜିକା ପଠନ କରାଯାଇ ରାଷ୍ଟ୍ର ଦେବତାଙ୍କ ପାଖେ ରାଷ୍ଟ୍ର ଫଳାଫଳ ଶୁଣାଯାଏ । ଏହା ଦୋଳପର୍ବର ବୈଶିଷ୍ଟ୍ୟ ।

ନୟାଗଡ଼

---

# ନଡ଼ିଆ ଗଛର ଏରିଓଫିଡ୍ ମାଇଟ୍ ନିୟନ୍ତ୍ରଣ ପାଇଁ ବର୍ଦ୍ଧିତ ସରକାରୀ ପ୍ରୋତ୍ସାହନ

ରାଜ୍ୟ ସରକାର ଓଡ଼ିଶାର ନଡ଼ିଆ ଚାଷୀମାନଙ୍କୁ ଏରିଓଫିଡ୍ ପୋକ ନିରାକରଣ ପାଇଁ ଅଧିକ ସରକାରୀ ପ୍ରୋତ୍ସାହନ ଦେବାକୁ ସ୍ଥିର କରିଛନ୍ତି । ତଦନୁଯାୟୀ ନଡ଼ିଆରେ ଲାଗୁଥିବା ଏରିଓଫିଡ୍ ମାଇଟ୍‌ର ନିୟନ୍ତ୍ରଣ ଲାଗି ଆବଶ୍ୟକ ନିମାଜଲ୍ କୀଟନାଶକ ଔଷଧ, ଗଛପ୍ରତି ୩ ଥର ଔଷଧ ପ୍ରୟୋଗ କରିବାପାଇଁ ଖର୍ଚ୍ଚ ମଧ୍ୟରୁ ଭାରତ ସରକାରଙ୍କ ନାରୀକେଳ ଉନ୍ନୟନ ପରିଷଦ ଗଛପ୍ରତି ଟ.୮.୦୦ ରିହାତି ଦେଇଥିବା ବେଳେ ଚାଷୀଙ୍କୁ ଅବଶିଷ୍ଟ ଟଙ୍କା ଦେବାକୁ ପଡୁଥିଲା । ଏବେ ଚାଷୀଙ୍କୁ ଦେବାକୁ ପଡୁଥିବା ଟଙ୍କାରୁ ଟ.୪.୦୦ ରାଜ୍ୟ ସରକାର ଦେବାକୁ ସ୍ଥିର କରିବାରୁ ଚାଷୀ ବର୍ତ୍ତମାନ ଗଛପ୍ରତି ଟ.୧୨.୦୦ ରିହାତି ପାଇବେ ବୋଲି ରାଜ୍ୟ ଉଦ୍ୟାନ ନିର୍ଦ୍ଦେଶାଳୟ କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ ।

ରାଜ୍ୟର ସମସ୍ତ ନଡ଼ିଆ ବଗିଚା କରିଥିବା ଚାଷୀମାନେ ତୁରନ୍ତ ଏହି ସୁବିଧାର ସଦୁପଯୋଗ କରି ଏରିଓଫିଡ୍ ମାଇଟ୍ ଦ୍ୱାରା ଆକ୍ରାନ୍ତ ନଡ଼ିଆଗଛକୁ ମାଇଟ୍ ପ୍ରାଦୁର୍ଭାବରୁ ରକ୍ଷା କରିବା ସଂଗେସଂଗେ ଉତ୍କୃଷ୍ଟ, ରୋଗମୁକ୍ତ ଓ ଅଧିକ ନଡ଼ିଆ ଉତ୍ପାଦନ କରିବାକୁ ପରାମର୍ଶ ଦିଆଯାଉଅଛି ।

ଉକ୍ତ କୀଟନାଶକ ଔଷଧ ଅବିଭକ୍ତ କଟକ, ପୁରୀ, ବାଲେଶ୍ୱର, ଗଂଜାମ, ଢେଙ୍କାନାଳ ଏବଂ ମୟୂରଭଞ୍ଜ ଜିଲ୍ଲାରେ ଥିବା ଉଦ୍ୟାନବିତ୍ ଏବଂ ତାଙ୍କର କ୍ଷେତ୍ରକର୍ମଚାରୀଙ୍କ ଜରିଆରେ ବ୍ଲକ୍‌ସ୍ତରରେ ଉପଲବ୍ଧ ହେବ ବୋଲି ଉଦ୍ୟାନ ନିର୍ଦ୍ଦେଶାଳୟ ପକ୍ଷରୁ ଜଣାଇ ଦିଆଯାଇଛି ।

# ଭବିଷ୍ୟତର ଟେକ୍‌ନୋଲୋଜି : ନାନୋଟେକ୍‌ନୋଲୋଜି

ବସନ୍ତ କୁମାର ଦାସ

ବର୍ତ୍ତମାନ ହେଉଛି 'ଟେକ୍‌ନୋଲୋଜି'ର ଯୁଗ । ଯେଉଁ ଦେଶ ଟେକ୍‌ନୋଲୋଜି ବା ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଯେତେ ଆଗୁଆ ସେ ସେତେ ଧନୀ ଦେଶ ରୂପେ ପରିଚିତ । ଏହି ଟେକ୍‌ନୋଲୋଜିକୁ ମୁଖ୍ୟତଃ ପାଞ୍ଚଭାଗରେ ବିଭକ୍ତ କରାଯାଇଛି ଯଥା- ୧. ଇନ୍‌ଫରମେସନ୍ ଟେକ୍‌ଲୋଜି (IT), ୨. ଜୈବ ପ୍ରଯୁକ୍ତି ବିଦ୍ୟା (BT), ୩. ବାୟୋ ଇନ୍‌ଫାରମାଟିକ୍‌ସ (BIR), ୩. ମାସ୍ ଆଡିସନ୍ ଟେକ୍ନୋଲୋଜି (MAT) ଓ ୫. ନାନୋଟେକ୍‌ନୋଲୋଜି (Nano Technology) ବା ଅଦୃଶ୍ୟ କଳ ତିଆରି ବିଦ୍ୟା । ନାନୋ ଏକ ଗ୍ରୀକ୍ ଶବ୍ଦ ଯାହାର ଅର୍ଥ ବାମନ ବା ଡ୍ୱାର୍ଫ । ଯେତେବେଳେ କୌଣସି ବସ୍ତୁ 'ନାନୋ' ଆକାରକୁ ପରିବର୍ତ୍ତନ ହୋଇଯାଏ ତାର ଫିଜିକାଲ, କେମିକାଲ, ଅପ୍‌ଟିକାଲ, ମ୍ୟାଗ୍‌ନେଟିକ୍, ମେକାନିକାଲ୍ ଓ ବୈଦ୍ୟୁତିକ ଗୁଣାବଳୀରେ ପରିବର୍ତ୍ତନ ଘଟେ । ମଣିଷ କେଶର ଗୋଲେଇଠାରୁ ପ୍ରାୟ ଏକ ହଜାର ନିୟୁତଗୁଣ କ୍ଷୁଦ୍ର ହେଉଛି 'ନାନୋ'ର ଆକାର । 'ନାନୋ'ର ଅର୍ଥ ହେଉଛି ୧୦ର ବିଯୁକ୍ତ ୯ ଘାତ $୧୦^{-୯}$ ବିଲିୟନ ବା ଶହେକୋଟି ଭାଗରୁ ୧ ଭାଗ । ୧ ନାନୋମିଟର = $୧୦^{-୯}$ ମିଟର ବା ମିଟରର ଶହେ କୋଟି ଭାଗରୁ ୧ ଭାଗ । ଏହା କେବଳ ୩୨୫ଟି ପରମାଣୁ ଦୈର୍ଘ୍ୟ ସହ ସମାନ । ନାନୋ ମେସିନ୍ (କୁନି ମେସିନ୍) କୁନି ନୁହେଁ, ଏହା ଆଖିକୁ ଦେଖାଯାଏ ନାହିଁ । ମୁଣ୍ଡ କେଶର ଗୋଲେଇଠାରୁ ଢେର କମ୍ । ଏଣୁ ମୁଣ୍ଡ ଖାଲି ଆଖିକୁ ଦେଖାଯାଉଥିବାବେଳେ ନାନୋ ମେସିନ୍ (କୁନି କଳ) ଆଖିକୁ ଦେଖାଯାଏ ନାହିଁ । ଏହି ନାନୋମେସିନ୍‌କୁ ନାନୋଟେକ୍‌ନୋଲୋଜି ବା ଅଦୃଶ୍ୟକଳ ତିଆରି ବିଦ୍ୟା ସହାୟତାରେ ପ୍ରସ୍ତୁତ କରାଯାଇଥାଏ । ଡେଭିଡ୍ ବିଶପ୍‌ଙ୍କ ଅନୁସାରେ ନାନୋଟେକ୍‌ନୋଲୋଜି ହେଉଛି ଗୋଟିଏ କଳ, ଗଠନ ବା ବ୍ୟବସ୍ଥା ଯେଉଁଥିରେ ନାନୋସ୍କେଲ ବ୍ୟବହାର ହୁଏ । 'ନାନୋସ୍କେଲ୍'ମାନେ ଯେଉଁ ସ୍କେଲରେ ମାପର ଏକକ ଏକ ମିଟରର ଶହେକୋଟି ଭାଗରୁ ଭାଗେ । ଉନ୍ନତମାନର ଔଷଧ ପ୍ରସ୍ତୁତ କରିବା କ୍ଷେତ୍ରରେ ନାନୋଟେକ୍‌ନୋଲୋଜିର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ହୃଦ୍‌ରୋଗ ଚିକିତ୍ସା କ୍ଷେତ୍ରରେ ପଥ୍ୟ 'ନାନୋ' ଟେକ୍‌ନୋଲୋଜି ଦ୍ୱାରା ପ୍ରସ୍ତୁତ କରାଯାଇ ହୃଦୟ (Heart) ଯନ୍ତ୍ରଣା ଉପଶମ କରେ । ହୃଦୟର କାର୍ଯ୍ୟକ୍ଷମ ପାଇଁ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ କରିବାରେ ଏହି ପଥ୍ୟ (ଔଷଧ) ବେଶ୍ ସହାୟକ ହୋଇଥାଏ । ସେହିପରି ଅପରାଧୀଙ୍କୁ ଚିହ୍ନଟ କରିବା କ୍ଷେତ୍ରରେ ନାନୋଟେକ୍‌ନୋଲୋଜିର ଭୂମିକା ମଧ ରହିଛି । ନାନୋ ଟିଉବ୍ (Nano Tube) ପେସ୍‌ମେକର୍ ହାର୍ଟ (ହୃତ୍‌ପିଣ୍ଡ)ରେ ଥିବା ଉକ୍ତ Blood Vesselରେ ରଖାଯାଇପାରିବ । ଖାଲି ସେତିକି ନୁହେଁ ନଷ୍ଟ ହୋଇଥିବା ବା ରୋଗାକ୍ରାନ୍ତ ତନ୍ତୁ (Tissue)କୁ ସଜାଡ଼ିବାରେ ଏହି ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ କରାଯାଇଥାଏ । ନାନୋ କୋଟିଙ୍ଗ୍ ବା ପ୍ରଲେପ ସ୍ୱଚ୍ଛ, କ୍ଷୟ ସହିଷ୍ଣୁ ଓ ମଇଳା ନିବାରଣକ୍ଷମ ଅଟେ । ବୈଜ୍ଞାନିକମାନେ ସାରା ପୃଥିବୀରେ ବର୍ତ୍ତମାନ ନାନୋଟେକ୍‌ନୋଲୋଜି କ୍ଷେତ୍ରରେ ଖୁବ୍ ଜୋର୍‌ସୋର୍‌ରେ ଅଣ୍ଟାଭିଡ଼ି ଲାଗିପଡ଼ିଛନ୍ତି । ଏହି ଟେକ୍‌ନୋଲୋଜି ଭବିଷ୍ୟତରେ ଏକ ଭିନ୍ନ ଧରଣର ଟେକ୍‌ନୋଲୋଜିରେ ପରିଣତ ହେବାକୁ ଯାଉଛି ଓ ଏହା ଏକବିଂଶ ଶତାବ୍ଦୀର ଶିଳ୍ପ ବିପ୍ଳବକୁ ତ୍ୱରାନ୍ୱିତ କରିବ । ଟିଉମର୍ ଓ କ୍ୟାନ୍‌ସର୍ ରୋଗକୁ ଭଲ କରିବା କ୍ଷେତ୍ରରେ ଏହା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିବ । କାରଣ ଏହି ଟେକ୍‌ନୋଲୋଜିର ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ପ୍ରୟୋଗ କରିବା ଦ୍ୱାରା ଟିଉମର୍ ଓ କ୍ୟାନ୍‌ସର୍ ରୋଗ କ୍ଷେତ୍ରରେ କେମୋଥେରାପି ଓ ରେଡିଓଥେରାପି ବ୍ୟବହାର କରାଯିବ ନାହିଁ । ଜୈବ ବିଜ୍ଞାନ, ଔଷଧ, ପରିବେଶ ବିଜ୍ଞାନ, ପ୍ରସାଧାନ ସାମଗ୍ରୀ, ଇଲେକ୍‌ଟ୍ରୋନିକ୍ ଯନ୍ତ୍ରାଂଶ ଓ ନିରାପତ୍ତା ଆଦି କ୍ଷେତ୍ରରେ ଏହି ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ହେବ । ଆମେରିକା, ଇଂଲଣ୍ଡ, ଫ୍ରାନ୍‌ସ, ଜାପାନ, ଜର୍ମାନୀ ଓ ଭାରତ ସମତେ ଅନେକ ଅଗ୍ରଣୀ ରାଷ୍ଟ୍ର ଏହି ପ୍ରଯୁକ୍ତି ବିଦ୍ୟାର ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ବହୁ ଧନ ବିନିଯୋଗ କରିସାରିଛି । ଆଗାମୀ ୧୦ ବର୍ଷରେ ନାନୋଟେକ୍‌ନୋଲୋଜିରେ ଆମେରିକା ୧୦୦ କୋଟି ଡଲାର ଖର୍ଚ୍ଚ କରିବାର ଅଟକଳ କରିଛନ୍ତି । ନାନୋଟେକ୍‌ନୋଲୋଜିରେ ଏମ୍.ଟେକ୍ (M.Tech) ଭଳି ସ୍ୱତନ୍ତ୍ର ପାଠ୍ୟକ୍ରମ ଆମଦେଶରେ ମଧ ଆରମ୍ଭ ହେଲାଣି । National Physical Laboratory (NPL), Delhi University (DU), National Chemical Laboratory (NCL), Indian Institute of Technology (IIT) ଏହି ବିଷୟରେ

ପାଠ୍ୟକ୍ରମ ଆମଦେଶରେ ଆରମ୍ଭ କରିସାରିଲେଣି । ତା'ଛଡ଼ା ଦିଲ୍ଲୀ, କାନପୁର, ପୁନେ ଓ ଚଣ୍ଡୀଗଡ଼ ପ୍ରଭୃତି ସ୍ଥାନରେ ଏହି ପାଠ୍ୟକ୍ରମ ଆରମ୍ଭ ହୋଇଛି । ଏଥିରେ ପଢ଼ିବା ନିମନ୍ତେ ପ୍ରାରମ୍ଭିକ ଶିକ୍ଷାଗତ ଯୋଗ୍ୟତା ରହିଛି B.E. କିମ୍ବା Physics, Chemistry, Bio-Technologyରେ ଅତିକମ୍‌ରେ ସ୍ନାତକୋତ୍ତର (M.Sc.) ଡ୍ରିଗୀ ହାସଲ କରିଥିବା ଆବଶ୍ୟକ ।

ୱେବ୍‌ସାଇଟ୍ ଜରିଆରେ amacon.comକୁ ଗଲେ Nanotechnology ସମ୍ବନ୍ଧରେ ବହୁତ ତଥ୍ୟ ଜାଣିହେବ । ଏହା ଏକ ସଂପୂର୍ଣ୍ଣ ନୂଆ ବିଷୟ ଓ ଭବିଷ୍ୟତରେ ଦେଶ ଭିତରେ ଓ ଦେଶ ବାହାରେ ଏହି ପାଠ୍ୟକ୍ରମର ଶିକ୍ଷାଗତ ଯୋଗ୍ୟତା ଥାଇ ପାଶ୍ କଲେ ନିଯୁକ୍ତି ସୁବିଧା ମିଳିବା ସଙ୍ଗେସଙ୍ଗେ ଏହି ଟେକ୍‌ନୋଲୋଜି କ୍ଷେତ୍ରରେ ଗବେଷଣା ନିମନ୍ତେ ସୁବିଧାସୁଯୋଗ ମଧ୍ୟ ମିଳିପାରିବ । ଏବେ ଓଡ଼ିଶାରେ ଏହି କ୍ଷେତ୍ରରେ ସୁବିଧାସୁଯୋଗ ସୃଷ୍ଟି ହେବାକୁ ଯାଉଛି । ଭବିଷ୍ୟତରେ ଓଡ଼ିଶାର ବୈଜ୍ଞାନିକ ଏ କ୍ଷେତ୍ରରେ ନୂଆ ନୂଆ ଗବେଷଣାର ଇତିହାସ ସୃଷ୍ଟି କରିବେ ।

ଆମ ପ୍ରକୃତିରେ ନାନୋକଳ କାମ କରିବାର ଅନେକ ନଜିର୍ ରହିଛି । ଯାହାକୁ ଆମେ ଲକ୍ଷ୍ୟ କରିନାହୁଁ । ଉଦ୍ଭିଦ ପ୍ରାଣୀମାନେ ଅତି ସୂକ୍ଷ୍ମ ସ୍ତରରେ ଗୁଡ଼ିଏ 'ନାନୋକଳ'ର ସମାହାର । ନାନୋ କଳମାନଙ୍କ ମଧ୍ୟରେ ସବୁଠାରୁ ଜଣାଶୁଣା ହେଉଛି ଓ DNA, RNA ଏନ୍‌ଜାଇମ୍‌ମାନେ । କୃତ୍ରିମ ନାନୋକଳର ଉଦାହରଣ ହେଉଛି କୃତ୍ରିମ ଆଣ୍ଟିବାୟୋଟିକ୍ସ । ଏହା କେବଳ ରୋଗ ଜୀବାଣୁକୁ ଆକ୍ରମଣ କରିଥାନ୍ତି । ରକେଟ୍, ବିମାନ, କ୍ଷେପଣାସ୍ତ୍ର ଓ ସାଟେଲାଇଟ୍ ପ୍ରଭୃତିର ଓଜନ କମ୍ କରିବା ନିମନ୍ତେ ବୋଇଂ ନାନୋଟେକ୍‌ନୋଲୋଜିର ପ୍ରୟୋଗ କରିବା ନିମନ୍ତେ ଯୋଜନା କରାଯାଉଛି । ଅନେକ ସଂସ୍ଥା ବିଭିନ୍ନ କ୍ଷେତ୍ରରେ ନାନୋଟେକ୍‌ନୋଲୋଜିର ପ୍ରୟୋଗ କରିଦେଲେଣି । ଦାନ୍ତକୁ ମଜବୁତ୍ କରିବା ନିମନ୍ତେ (ଆପେ ଆପେ ଶକ୍ତ ହେଉଥିବା ବସ୍ତୁକୁ) ନାନୋଟେକ୍‌ନୋଲୋଜି ଦ୍ୱାରା ପ୍ରସ୍ତୁତ କରାଯାଉଛି । ଆପେ ଆପେ ସଫା ହେଉଥିବା କାଚ (Medical imaging and optical imaging) ଓ ବର୍ଷାରେ ଓଦା ହେଉନଥିବା ଖେଳାଳୀଙ୍କ ଜାମା/ପୋଷାକକୁ ନାନୋଟେକ୍ ଜରିଆରେ ସୁନ୍ଦର, ସଫଳ ଓ ସମ୍ଭବ ହୋଇପାରିଛି । ପରମାଣୁ ସ୍ତରର ଗଠନରେ ଭିନ୍ନତା, ନାନୋଗଠନ ଯୋଗୁଁ ସିମେଣ୍ଟକୁ ପତଳା କରି କାଟିଲେ ତାହା ଭୁଷୁଡ଼ି ପଡ଼େ କିନ୍ତୁ ଶାମୁକା, ଶଙ୍ଖ କିମ୍ବା ଗେଣ୍ଡାକୁ ପତଳା କରି କାଟିଲେ ତାହା ଭୁଷୁଡ଼ି ପଡ଼େ ନାହିଁ କିମ୍ବା ଭାଙ୍ଗିଯାଏ ନାହିଁ । ଏଣୁ ନାନୋଗଠନକୁ କଣ୍ଟ୍ରୋଲ କରିପାରିଲେ ଆମେ କ୍ଷଣଭଙ୍ଗୁରକୁ ଅତୁଟ ରଖିପାରିବା (ଅଭଙ୍ଗା କରିପାରିବା) । ଏ ପ୍ରକାର ପ୍ରଯୁକ୍ତିବିଦ୍ୟା ବା ବୈଷୟିକ ଜ୍ଞାନକୌଶଳ (Technology)କୁ ନାନୋଟେକ୍‌ନୋଲୋଜି କହିବା । ଏବେ ସାରା ପୃଥିବୀରେ ନାନୋଟେକ୍‌ନୋଲୋଜି ସମ୍ବନ୍ଧରେ ଗବେଷଣା ଜାରି ରହିଛି । ଏବେ ବି ଏହା ଗବେଷଣାଗାରରେ ରହିଛି, ଏହା ବଜାରକୁ ପୂର୍ଣ୍ଣମାତ୍ରାରେ ଆସିଲେ ବେଶ୍ ବିସ୍ମୟ, ବିଚିତ୍ରତା ଓ ବ୍ୟତିକ୍ରମ ପରିଲକ୍ଷିତ ହେବ । ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ଏ ସମ୍ବନ୍ଧରେ ଛାତ୍ରଛାତ୍ରୀମାନଙ୍କୁ ଏ ସମ୍ବନ୍ଧରେ ଜ୍ଞାନପ୍ରଦାନ କରାଗଲେ ଏହି ପ୍ରଯୁକ୍ତିବିଦ୍ୟା ଅନନ୍ୟ, ଅନୁପମ ଓ ଅଦ୍ୱିତୀୟ ହୋଇପାରିବ । ନୂତନ ପାଠ୍ୟକ୍ରମ (ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା)ରେ ଏହା ସମ୍ବନ୍ଧରେ ଛାତ୍ରଛାତ୍ରୀମାନେ ଜ୍ଞାନ ଆହରଣ କଲେ ଭବିଷ୍ୟତରେ ଏହି ବିଷୟରେ ଏକ ବୈପ୍ଳବିକ ପରିବର୍ତ୍ତନ ଦେଖା ହେବ । ଆମ ଦେଶର ରାଷ୍ଟ୍ରପତି ଡଃ କାଲାମ୍, ପ୍ରଫେସର ସି.ଏନ୍.ଆର୍ ରାଓ, ପ୍ରଫେସର ଡି.ଡି. ଶର୍ମା, ପ୍ରଫେସର ଜି.ୟୁ. କୁଲକର୍ଣ୍ଣି, ଡଃ . ଗୋବିନ୍ଦରାଜ, ପ୍ରଫେସର ଏ.କେ. ସୁଦ୍, ପ୍ରଫେସର କେ. ଚଟୋପାଧ୍ୟାୟ ଓ ଡଃ ମୁରଲୀ ଶାସ୍ତ୍ରୀଙ୍କ ଭଳି ବୈଜ୍ଞାନିକ ଏହି ନାନୋଟେକ୍‌ନୋଲୋଜି ସମ୍ବନ୍ଧରେ ଗବେଷଣା କରୁଛନ୍ତି । ଡଃ କାଲାମ କହନ୍ତି ଭବିଷ୍ୟତର ଟେକ୍‌ନୋଲୋଜି ହେଉଛି ନାନୋଟେକ୍‌ନୋଲୋଜି ସମ୍ବନ୍ଧରେ ଗୁରୁତ୍ୱ ଓ ଗବେଷଣା କରୁଛନ୍ତି । ଡଃ କାଲାମ କହନ୍ତି ଭବିଷ୍ୟତର ଟେକ୍‌ନୋଲୋଜି ହେଉଛି ନାନୋଟେକ୍‌ନୋଲୋଜି ଓ ଏହାଦ୍ୱାରା ନାନୋ ପଦାର୍ଥ ଓ ନାନୋ ଯନ୍ତ୍ରପାତି ତିଆରି ସମ୍ଭବ ହୋଇପାରିବ । କାର୍ବନ୍ ନାନୋଟ୍ୟୁବ୍ ଟ୍ରାଞ୍ଜିଷ୍ଟର୍‌ରେ ବ୍ୟବହୃତ ହୋଇପାରିବ ଓ ଅତି କ୍ଷୁଦ୍ର ଅଣୁଜୀବରୁ ନାନୋମ୍ୟାଟେରିଆଲ୍ ପ୍ରସ୍ତୁତ ସମ୍ଭବ ହେବ। ସଂଗେସଂଗେ ଇଲେକ୍‌ଟ୍ରୋନିକ୍ ଶିଳ୍ପରେ ନାନୋଟେକ୍‌ନୋଲୋଜିର ପ୍ରୟୋଗ ଏକ ଯୁଗାନ୍ତକାରୀ ଘଟଣା ଅଟେ । (ସିଲିକନ୍‌ରୁ ପ୍ରସ୍ତୁତ ଆଇ.ସି.ର ଦ୍ରୁତ ପ୍ରସାରବେଳେ) ଏଣୁ ଭବିଷ୍ୟତ ବା ଏକବିଂଶ ଶତାବ୍ଦୀକୁ କେବଳ ନାନୋଟେକ୍‌ନୋଲୋଜି ଯୁଗ (Age of Nanotechnology) କୁହାଯିବ । ଖ୍ରୀଷ୍ଟପୂର୍ବ ୪୪୦ ବା ୨୪୪୫ ବର୍ଷତଳେ ଡେମୋକ୍ରିଟସ୍‌ଙ୍କ ବାଣୀର 'ନାନୋଟେକ୍‌ନୋଲୋଜି' ସହ ଅନେକ ସାମଞ୍ଜସ୍ୟ ରହିଛି, ତାହା ହେଉଛି ସର୍ବବୃହତ୍‌କୁ ବୁଝିବା ନିମନ୍ତେ ଆମକୁ ସବୁଠୁଁ କ୍ଷୁଦ୍ର (ପଦାର୍ଥ)କୁ ବୁଝିବା ସର୍ବାଦୌ ଉଚିତ୍ ।

(ଡେଭିଡ୍ ବିଶପ୍ : ନିଉଜର୍ସି ନାନୋ ଟେକ୍‌ନୋଲୋଜି କନ୍‌ସୋର୍ଟିୟମ୍ ସହିତ ସଂଶ୍ଳିଷ୍ଟ)

କ୍ୱାର୍ଟର ନଂ-ବି/୧୧୩, ସେକ୍ଟର-୧
ନାଲ୍‌କୋ ଟାଉନସିପ୍
ଦାମନଯୋଡ଼ି - ୭୬୩୦୦୮, କୋରାପୁଟ

---

# ମିଶନ ଶକ୍ତିର ନବାଲୋକରେ ଗୋପ ବ୍ଲକ୍‌ର ମହିଳା ଆତ୍ମନିର୍ଭରଶୀଳ ପଥେ


'ଗୋପ' ବ୍ଲକ୍‌ର ସ୍ୱୟଂ ସହାୟକ ଗୋଷ୍ଠୀ 'ଶକ୍ତିରୂପା'ର ଉଦ୍‌ଘାଟନ ଉତ୍ସବ

ଦାମୋଦର ପାଢ଼ୀ

ଦୁହିତା, ଜାୟା, ଜନନୀ, ଭଗିନୀ ରୂପେ ମାତୃ ସମାଜ ଯୁଗେ ଯୁଗେ ପୂଜିତା । କବିତା, ଲତା, ବନିତା ଅନ୍ୟର ଆଶ୍ରା ବିନା ବଞ୍ଚି ପାରନ୍ତି ନାହିଁ, ଏହି ଉକ୍ତିକୁ ମିଥ୍ୟା ରୂପେ ପ୍ରମାଣ କରିବାକୁ 'ମିଶନ ଶକ୍ତି' କାର୍ଯ୍ୟକ୍ରମକୁ ଓଡ଼ିଶା ସରକାର ପ୍ରାଧାନ୍ୟ ଦେଇ ଓଡ଼ିଶାର ପ୍ରତ୍ୟେକ ପ୍ରାନ୍ତରରେ କାର୍ଯ୍ୟକାରୀ କରିଛନ୍ତି । ଏହାର ସୁଫଳ ପୁରୀ ଜିଲ୍ଲାରେ ଅନୁଭୂତ ହୋଇ ଆଜି ଗ୍ରାମାଞ୍ଚଳର ମାଆ, ଭଉଣୀମାନେ ଆତ୍ମନିର୍ଭରଶୀଳ ହେବା ସହ ସାମାଜିକ ଚିନ୍ତାଧାରାରେ ନୂତନତ୍ୱ ଆଣିବାକୁ ବହୁତ ପଦକ୍ଷେପ ନେଇଛନ୍ତି । ଏ ମଧ୍ୟରେ ଗୋପ ବ୍ଲକ୍‌ର ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ମିଶନ ଶକ୍ତି କାର୍ଯ୍ୟକ୍ରମର ସଫଳ ରୂପାୟନ ହୋଇପାରିଛି । ଗତ ତା.୧୦.୧୨.୦୫ରିଖ ଦିନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନୂତନ ରୂପେ ଗଠିତ 'ଶକ୍ତିରୂପା'କୁ ଉଦ୍‌ଘାଟନ କରିବା ସହ ବିଭିନ୍ନ ସ୍ୱୟଂ ସହାୟକ ଗୋଷ୍ଠୀର ବିଭିନ୍ନ ଉତ୍ପାଦିତ ସାମଗ୍ରୀର ପ୍ରଦର୍ଶନୀକୁ ବୁଲି ଦେଖିଥିଲେ । ବ୍ଲକ୍‌ରେ ଅଦ୍ୟାବଧି ୧୧୯୯ଟି ଆତ୍ମସହାୟିକା ଗୋଷ୍ଠୀ ଗଠିତ ହୋଇଛି, ଯାହାର ସଦସ୍ୟା ସଂଖ୍ୟା ୧୯୮୧୦ । ମା', ଭଉଣୀଙ୍କର ସଞ୍ଚିତ ରାଶିର ପରିମାଣ ୧ କୋଟି ୯ ଲକ୍ଷ ୯୧ ହଜାର ଟଙ୍କା ହୋଇପାରିଛି । ଏ ମଧ୍ୟରୁ ୯୩୦ଟି ସ୍ୱୟଂସହାୟିକା ଗୋଷ୍ଠୀ ନିଜର ବ୍ୟବସାୟିକ, ବାଣିଜ୍ୟ ପ୍ରତିଷ୍ଠାନର ପରିସର ବୃଦ୍ଧି ପାଇଁ ବିଭିନ୍ନ ବ୍ୟାଙ୍କରୁ ଋଣ ନେବା ଓ ପରିଶୋଧ କରିବାରେ ନିଜକୁ ସଂଶ୍ଳିଷ୍ଟ କରିପାରିଛନ୍ତି । ଏମାନଙ୍କୁ ଅଦ୍ୟାବଧି ୨ କୋଟି ୪୩ ହଜାର ଟଙ୍କାର ଋଣ ମଞ୍ଜୁର ହୋଇଛି । ପରିବାରର ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଆଶାତୀତ ଭାବେ ବୃଦ୍ଧି ହେଉଥିବାବେଳେ ସମସ୍ତ ପିଲାଙ୍କୁ ପାଠ ପଢ଼ାଇବାର ସଂକଳ୍ପ ମାଆମାନେ ନେଇ ପାରିଛନ୍ତି । ସାମାଜିକ ସ୍ଥିତିରେ ସେମାନଙ୍କର ପଦ ମର୍ଯ୍ୟାଦା ବୃଦ୍ଧି ପାଇଛି । ଘରର ଆର୍ଥିକ ଦୁଃସ୍ଥିତିରେ ଏମାନେ ଆଉ ମହାଜନର ଦ୍ୱାରକୁ ଋଣ ପାଇଁ ହାତ ବଢ଼ାଇବାକୁ ଯାଉନାହାନ୍ତି । କୋଣାର୍କ ଏନ୍.ଏ.ସି. ସହ ୨୯ଟି ଗ୍ରାମପଞ୍ଚାୟତରେ ୧୧୯୯ଟି ଏସ୍.ଏଚ୍.ଜି. ସ୍ୱୟଂସହାୟକ ଗୋଷ୍ଠୀର ୧୯୮୧୦ ସଦସ୍ୟା ମିଶନ ଶକ୍ତି କାର୍ଯ୍ୟକ୍ରମରେ ଉପକୃତ ହୋଇପାରିଛନ୍ତି । ଏହାବ୍ୟତୀତ ଗୋପ ବ୍ଲକ୍‌ର ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ୬୧୭ଟି ଏସ୍.ଏଚ୍.ଜି. ସ୍ୱୟଂସହାୟକ ଗୋଷ୍ଠୀ ଗଠିତ ହୋଇପାରିଛି । ଏମାନଙ୍କର ନିକଟରେ ଆଜି କାମର ଅଭାବ ନାହିଁ । ଗୋପ ବ୍ଲକ୍‌ର ସ୍ୱୟଂସହାୟକ ଗୋଷ୍ଠୀମାନେ ଜନଚେତନା କାର୍ଯ୍ୟକ୍ରମରେ ନିଜକୁ ସାମିଲ କରିପାରିଛନ୍ତି । ନିଜର କୌଳିକ ବୃତ୍ତିକୁ ଉଜ୍ଜୀବିତ ରଖିବାକୁ ତଥା ବ୍ୟବସାୟିକ କାର୍ଯ୍ୟରେ ପରିବାରର ସ୍ଥିତିକୁ ସୁଦୃଢ଼ ରଖିବାରେ ଏମାନେ ଆଜି ସକ୍ଷମ ହୋଇପାରିଛନ୍ତି । ମିଶନ ଶକ୍ତି କାର୍ଯ୍ୟକ୍ରମର ସୁଫଳ ଏମାନେ ଆଜି ପାଇପାରିଛନ୍ତି । ଏମାନଙ୍କର ସ୍ଥିତିରେ ସୁଧାର ଆସିବା ଦେଖି ଅଧିକରୁ ଅଧିକ ମହିଳା ନିଜ ନିଜର ଗ୍ରାମରେ, ସାହିତରେ ଏସ୍.ଏଚ୍.ଜି. ଗଠନ କରିବାକୁ ଆଗ୍ରହ ପ୍ରକାଶ କରି ସ୍ୱତଃ ପ୍ରବୃତ୍ତଭାବେ ଆଗେଇ ଆସିଛନ୍ତି । ପଥର ଖୋଦେଇ କାର୍ଯ୍ୟ, ସମୁଦ୍ରଜାତ ସାମଗ୍ରୀର ବିକ୍ରୀ, ନଡ଼ିଆକତା କାର୍ଯ୍ୟ, ଚାଉଳ, ମଶାଲା, ପନିପରିବା ବିକ୍ରୀ, ବିଭିନ୍ନ ପୋଷାକ ସିଲେଇ ଓ ବିକ୍ରୀ, କର୍ପୁର ମାଳି ଓ ଅନ୍ୟାନ୍ୟ ମାଳି ତିଆରି କରି ବିକ୍ରୀ, ବାଉଁଶ କାମ, ଫିନାଇଲ ବିକ୍ରୀ ଓ ଅନ୍ୟାନ୍ୟ ଖାଦ୍ୟ ସମାଗ୍ରୀର ହୋଟେଲ ପରିଚାଳନା କରିବାକୁ ଏମାନଙ୍କୁ 'ମିଶନ ଶକ୍ତି' ଶକ୍ତି-ସାମର୍ଥ୍ୟ ଯୋଗାଇପାରିଛି । ଗୋପ ବ୍ଲକ୍‌ର ସମସ୍ତ ଏସ୍.ଏଚ୍.ଜି.ର ଉତ୍ପାଦିତ ସାମଗ୍ରୀକୁ ବଜାରରେ ବିକ୍ରୀ କରିବା ନିମନ୍ତେ କୋଣାର୍କ ସୂର୍ଯ୍ୟ ମନ୍ଦିର ସମ୍ମୁଖରେ ଏକ ଦୋକାନ ଘର ନିର୍ମାଣ କରି ବିଭିନ୍ନ ସାମଗ୍ରୀର ବିକ୍ରୟ କାର୍ଯ୍ୟ ୧୦.୧୨.୦୫ରୁ କରିପାରିଛନ୍ତି । ଏହାର ନାମ 'ଶକ୍ତିରୂପା' ରଖିଛନ୍ତି । ଏହାକୁ ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରି ସମସ୍ତ ସଦସ୍ୟାଙ୍କୁ ଅଧିକ ଉତ୍ସାହର ସହ ସମାଜ ଗଠନରେ ଆଗେଇ ଯିବାକୁ ଓ ସମୟର ସଦ୍‌ଉପଯୋଗ କରିବାକୁ ପରାମର୍ଶ ଦେଇଥିଲେ ।

ଆଜି ମିଶନ ଶକ୍ତିର ନବାଲୋକରେ ଗୋପ ବ୍ଲକ୍‌ର ସମସ୍ତ ମହିଳା ଆତ୍ମନିର୍ଭରଶୀଳ ପଥେ ଅଗ୍ରସର । କାଲିର ସମାଜ ଓ ଆଜିର ସମାଜ ମଧ୍ୟରେ ବୃହତ୍ ତଫାତ୍ ଆଣିବାରେ ମିଶନ ଶକ୍ତି କାର୍ଯ୍ୟକ୍ରମ ସଫଳ ହୋଇପାରିଛି ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ପୁରୀ

# ଉତ୍କଳ ପ୍ରସଙ୍ଗର

## ସ୍ୱତ୍ୱ ତଥା ଅନ୍ୟାନ୍ୟ ସୂଚନା ସମ୍ପର୍କିତ ବିବରଣୀ

### ଫର୍ମ ନଂ - ୪

### (ନିୟମାବଳୀ - ୮)

| | | | |
|---|---|---|---|
| ୧. | ପ୍ରକାଶନର ସ୍ଥାନ | ... | ଭୁବନେଶ୍ୱର |
| ୨. | ପ୍ରକାଶନର ସମୟ କାଳ | ... | ମାସିକ |
| ୩. | ମୁଦ୍ରଣକାରୀଙ୍କ ନାମ | ... | ଶ୍ରୀ ପ୍ରକାଶ ଚନ୍ଦ୍ର ମିଶ୍ର, ଆଇ.ପି.ଏସ୍.<br>ଓଡ଼ିଶା ସରକାରଙ୍କ ନିମନ୍ତେ ଓ ତରଫରୁ । |
| | ଜାତୀୟତା | ... | ଭାରତୀୟ |
| | ଠିକଣା | ... | ନିର୍ଦ୍ଦେଶକ, ଓଡ଼ିଶା ସରକାରୀ ମୁଦ୍ରଣାଳୟ, ମଧୁପାଟଣା, କଟକ - ୭୫୩୦୧୦ । |
| ୪. | ପ୍ରକାଶକଙ୍କ ନାମ | ... | ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି<br>ନିର୍ଦ୍ଦେଶକ<br>ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର-୭୫୧୦୦୧ |
| ୫. | ସଂପାଦକଙ୍କ ନାମ | ... | ଶ୍ରୀ ଶରତ ଚନ୍ଦ୍ର ସାମନ୍ତରାୟ |
| | ଜାତୀୟତା | ... | ଭାରତୀୟ |
| | ଠିକଣା | ... | କାର୍ଯ୍ୟ ନିର୍ବାହୀ ସଂପାଦକ, ଉତ୍କଳ ପ୍ରସଙ୍ଗ<br>ସୂଚନା ଓ ଲୋକ ସଂପର୍କ ବିଭାଗ<br>ଓଡ଼ିଶା ସରକାର, ଭୁବନେଶ୍ୱର - ୭୫୧୦୦୧ |
| | ଯେଉଁ ବ୍ୟକ୍ତିବିଶେଷ ସମ୍ବାଦପତ୍ର ସ୍ୱତ୍ୱାଧିକାରୀ ହୋଇଥିବେ ଓ ଅଂଶୀଦାର ହୋଇଥିବେ କିମ୍ବା ସମୁଦାୟ ମୂଳଧନର ଏକ ଶତାଂଶରୁ ଅଧିକ ମୂଳଧନ ବିନିଯୋଗ କରିଥିବେ ସେମାନଙ୍କ ନାମ ଓ ଠିକଣା | ... | ଓଡ଼ିଶା ସରକାର, ଭୁବନେଶ୍ୱର |

ମୁଁ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି, ନିର୍ଦ୍ଦେଶକ, ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର, ଏତଦ୍ୱାରା ଘୋଷଣା କରୁଅଛି ଯେ, ଉପର ଲିଖିତ ବିବରଣୀମାନ ମୋ ଜାଣିବାରେ ସତ୍ୟ ଅଟେ ।

ସ୍ୱା/-
(ବୈଷ୍ଣବ ପ୍ରସାଦ ମହାନ୍ତି)
ପ୍ରକାଶକଙ୍କ ସ୍ୱାକ୍ଷର
ନିର୍ଦ୍ଦେଶକ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର




# ସୂଚନା ଅଧିକାର ଆଇନ - ୨୦୦୫




ଶହେ କୋଟିରୁ ଉର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ଭାରତବର୍ଷ ବିଶ୍ୱର ଏକ ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ର । ସମସାମୟିକ ଅନ୍ୟ ସଂସଦୀୟ ରାଷ୍ଟ୍ରଗୁଡ଼ିକ ତୁଳନାରେ ଭାରତୀୟ ପ୍ରଶାସନରେ ଜନସଂପୃକ୍ତି ସ୍ଥିରତା, ଉତ୍ତର ଦାୟିତ୍ୱବୋଧତା ଓ ଶାସନର ସ୍ୱଚ୍ଛତା ଉତ୍ସାହଜନକ । ଉତ୍ତର ଦାୟିତ୍ୱବୋଧତା ସହିତ ଜନମୁଖୀ ଓ କ୍ରୀୟାଶୀଳ ସରକାର ପ୍ରତିଷ୍ଠିତ ହେବା ଫଳରେ ଆମ ସଂସଦୀୟ ଗଣତନ୍ତ୍ରର ଉପାଦେୟତା ବୃଦ୍ଧି ପାଇଛି । ବିଶ୍ୱରେ ଅନ୍ୟତମ ବୃହତ୍ ଶକ୍ତିରୂପେ ମୁଣ୍ଡ ଟେକୁଥିବା ଭାରତରେ ଶାସନ ବ୍ୟବସ୍ଥା ସ୍ଥିର ଓ ଶକ୍ତିଶାଳୀ ହୋଇପାରିଛି । ସମାଜର ବିଭିନ୍ନ ବର୍ଗଙ୍କ ସ୍ୱାର୍ଥର ସୁରକ୍ଷା ତଥା ଶାସନ ବ୍ୟବସ୍ଥାରେ ସେମାନଙ୍କ ସଂପୃକ୍ତି ସହିତ ଶାନ୍ତିପୂର୍ଣ୍ଣ ଭାବରେ ଶାସନ ପରିବର୍ତ୍ତନ ସମ୍ଭବପର ହୋଇପାରୁଛି । ଗଣତନ୍ତ୍ର ଶାସନରେ ଜନସାଧାରଣ କ୍ଷମତାର ଉତ୍ସ ହୋଇଥିବାବେଳେ ସେହି କ୍ଷମତାର ପ୍ରତିରୂପ ହେଉଛି ସଂସଦ ।

ଆମ ଦେଶର ଗଣତନ୍ତ୍ର ବହୁ ଉତ୍‌ଥାନ ପତନ ଓ ପରୀକ୍ଷାନିରୀକ୍ଷା ଦେଇ ଗତି କରି ଚାଲିଛି । ତା'ରି ଭିତରେ ଆମ ରାଷ୍ଟ୍ରଗଠନ ପ୍ରକ୍ରିୟା ଜାରୀ ରହିଛି । ଗଣତାନ୍ତ୍ରିକ ପଦ୍ଧତି ଶାସନକୁ ଆହୁରି ପୁଷ୍କଳ, ସ୍ୱଚ୍ଛ, ନିର୍ମଳ ଓ ଉତ୍ତରଦାୟିତ୍ୱ ସଂପନ୍ନ କରିବା ପାଇଁ ସୂଚନା ଅଧିକାର ବିଲ୍, ଡିସେମ୍ବର ୨୦୦୪ରେ ସଂସଦ ଅଧିବେଶନରେ ଉପସ୍ଥାପିତ ହେବାପରେ ମେ ୧୨ ତାରିଖ ୨୦୦୫ରେ ଗୃହୀତ ହୋଇଥିଲା ଓ ଜୁନ୍ ୧୫ ତାରିଖ ଦିନ ରାଷ୍ଟ୍ରପତିଙ୍କ ଅନୁମୋଦନ ଲାଭ କରିଥିଲା । ଏହି କେନ୍ଦ୍ରୀୟ ବିଲ୍‌ଟି ଜାମ୍ମୁ-କାଶ୍ମୀର ବ୍ୟତୀତ ଭାରତବର୍ଷର ସମସ୍ତ ରାଜ୍ୟରେ କାର୍ଯ୍ୟକାରୀ ହେଉଛି । ସେହି ପରିପ୍ରେକ୍ଷୀରେ ଏହି ସୂଚନା ଅଧିକାର ଆଇନ-୨୦୦୫, ଆମ ରାଜ୍ୟରେ ଗତ ଅକ୍ଟୋବର ମାସ ୧୨ ତାରିଖରୁ କ୍ରିୟାଶୀଳ ହୋଇଛି ।

ସୂଚନା ଅଧିକାର ଆଇନର ମୁଖ୍ୟ ଉଦ୍ଦେଶ୍ୟ ହେଲା, ପ୍ରଶାସନରେ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱବୋଧତା ସୃଷ୍ଟି କରିବା । ସୂଚନା ଅଧିକାର ବଳରେ ସାଧାରଣ ଜନତା ସରକାରଙ୍କ ବା ସରକାରୀ କର୍ତ୍ତୃତ୍ୱାଧୀନ ସଂସ୍ଥାଗୁଡ଼ିକରୁ ଇପ୍‌ସିତ ସୂଚନା ସହଜରେ ହାସଲ କରିପାରିବେ । ଏହି ଆଇନକୁ ଓଡ଼ିଶାରେ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟ ସରକାର, ସୂଚନା ଓ ଲୋକ ସଂପର୍କ ବିଭାଗକୁ ଦାୟିତ୍ୱ ଅର୍ପଣ କରିଛନ୍ତି । ଏଥିନିମନ୍ତେ ଏକ ରାଜ୍ୟସ୍ତରୀୟ ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ ସେଲ୍ ସୂଚନା ଓ ଲୋକ ସଂପର୍କ ବିଭାଗରେ କାର୍ଯ୍ୟ କରୁଛି । ବିଭାଗୀୟ କମିଶନର ତଥା ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି 'ନୋଡାଲ ଅଫିସର' ଭାବେ କାର୍ଯ୍ୟ କରୁଛନ୍ତି । ଏହା ଉଲ୍ଲେଖନୀୟ ଯେ, ସମଗ୍ର ଦେଶରେ ଓଡ଼ିଶା ଏହି ଆଇନକୁ କାର୍ଯ୍ୟକାରୀ କରାଇବା କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଛି ।

ଲୋକମାନଙ୍କ ମଧ୍ୟରେ ସୂଚନା ଅଧିକାର ସମ୍ବନ୍ଧରେ ସଚେତନତା ସୃଷ୍ଟି କରିବା ପାଇଁ ବର୍ତ୍ତମାନ ସରକାରୀ ଓ ବେସରକାରୀ ସ୍ତରରେ ଉଦ୍ୟମ ଆରମ୍ଭ ହୋଇଯାଇଛି । ଏହି ସୂଚନା ଅଧିକାର ଆଇନ ଫଳପ୍ରସୂ ହେବା ପାଇଁ ଜନସହଯୋଗ ଏକାନ୍ତ ଆବଶ୍ୟକ । ଏହି ଆଇନର ସୁବିଧା ସୁଯୋଗ ନେବାକୁ ଜନସାଧାରଣ ସର୍ବାନ୍ତକରଣରେ ଆଗେଇ ଆସିବେ ବୋଲି ଆମର ଆଶା ଓ ବିଶ୍ୱାସ ।

## ପ୍ରବାଦ ପୁରୁଷ ଅବିସ୍ମରଣୀୟ ବିଜୁ ପଟ୍ଟନାୟକ

ଓଡ଼ିଶାର ମହାନ୍ ଜନନାୟକ ସ୍ୱର୍ଗୀୟ ବିଜୁ ପଟ୍ଟନାୟକଙ୍କ ଯଶକୀର୍ତ୍ତି କେବଳ ଓଡ଼ିଶା ମଧ୍ୟରେ ସୀମିତ ନୁହେଁ, ଭାରତରେ ସେ ଥିଲେ ଜଣେ ଅଦ୍ୱିତୀୟ ନେତା ଓ ଇଣ୍ଡୋନେସିଆର ଭୂମିପୁତ୍ର । ନିଜର ଜନ୍ମ ଓ ଜୀବନ ପାଇଁ ଅନ୍ୟକୁ ଧନ୍ୟ ଓ ମହନୀୟ କରିଗଲେ ଯେ, ନିଜର ସ୍ୱପ୍ନ ଓ ଅଭିପ୍ସାକୁ ଆଖିରୁ ଆଖିଏ ସଂଚରିତ କରି ଗୋଟିଏ ଜାତିକୁ ପୂର୍ଣ୍ଣ କରିବାରେ ନିଜକୁ ଉତ୍ସର୍ଗ କରିଗଲେ ଯେ- ଅବଶୋଷ ଓ ନ୍ୟୂନ ମନୋବୃତ୍ତିରୁ ଉଦ୍ଧାର କରି ଗୋଟିଏ ଜାତିକୁ ସ୍ୱାଭିମାନ ଓ ଅହଂବୋଧରେ ମହିମାମଣ୍ଡିତ କରିଗଲେ ଯେ -

ସେ ଏ ଜାତିର ନାୟକ - ବିଜୁ ପଟ୍ଟନାୟକ । ତାଙ୍କର ପବିତ୍ର ଜନ୍ମଦିନରେ ପଞ୍ଚାୟତିରାଜ ଦିବସ ପାଳନ ଅବସରରେ ଉତ୍କଳ ପ୍ରସଙ୍ଗ ପରିବାର ତରଫରୁ ସଶ୍ରଦ୍ଧ ପ୍ରଣତି ଜଣାଉଛୁ ।



# ମହାମାନ୍ୟ ରାଜ୍ୟପାଳ
# ଶ୍ରୀ ରାମେଶ୍ୱର ଠାକୁରଙ୍କ ବାର୍ତ୍ତା

ଭାରତ ସରକାର ୨୦୦୫ ମସିହା ସେପ୍ଟେମ୍ବର ମାସରେ ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଅଧିନିୟମ-୨୦୦୫ ପ୍ରଣୟନ କରିଛନ୍ତି । ଏହି ଅଧିନିୟମ ଗ୍ରାମୀଣ ପରିବାରର ବୟସ୍କମାନଙ୍କୁ ଯେଉଁମାନେ କି ଅଣକୁଶଳୀ ଶାରୀରିକ କାର୍ଯ୍ୟ କରିବାକୁ ଚାହାଁନ୍ତି, ସେହିମାନଙ୍କୁ ଗୋଟିଏ ଆର୍ଥିକ ବର୍ଷରେ ଶହେ ଦିନର ଦୈନିକ ମଜୁରୀ ହିସାବରେ କର୍ମନିଯୁକ୍ତି ଯୋଗାଇ ଦେବାର ଆଇନଗତ ଗ୍ୟାରେଣ୍ଟି ଦିଏ ।

ଗ୍ରାମାଞ୍ଚଳରେ ଭିତ୍ତିଭୂମିର ବିକାଶ ନିମନ୍ତେ ମଜୁରି ପ୍ରଦାନ ମାଧ୍ୟମରେ ନିଯୁକ୍ତି ସୃଷ୍ଟି କରି ଲୋକମାନଙ୍କର ଜୀବିକା ନିରାପତ୍ତା ନିଶ୍ଚିତ କରିବା ହେଉଛି ଏହି ଅଧିନିୟମର ଲକ୍ଷ୍ୟ । ଚିର ଦାରିଦ୍ର୍ୟ ଯଥା- ମରୁଡ଼ି, ଜଙ୍ଗଲ ଧ୍ୱଂସ, ମୃତ୍ତିକା କ୍ଷୟର କାରଣଗୁଡ଼ିକୁ ସମ୍ବୋଧିତ କରୁଥିବା କାର୍ଯ୍ୟଗୁଡ଼ିକର ନିର୍ଦ୍ଧାରଣ ଏହାର ମାନ ଅଟେ । ଫଳପ୍ରଦ ଭାବେ କାର୍ଯ୍ୟକାରୀ ହୋଇ ନିଯୁକ୍ତି ସୃଷ୍ଟି ଦ୍ୱାରା ଦାରିଦ୍ର୍ୟ ଅବସ୍ଥା ବଦଳାଇବାକୁ ଏହି ଅଧିନିୟମର ସାମର୍ଥ୍ୟ ଅଛି ।

ଏହି ଅଧିନିୟମ ଲୋକମାନଙ୍କର ଅଧିକାର ସାବ୍ୟସ୍ତ କରେ ଏବଂ ସେମାନଙ୍କର ଦାବିକୁ ଠିକ୍ ଭାବରେ ପ୍ରତିପାଦନ କରେ । ଏହି ଅଧିନିୟମ ଅନ୍ତର୍ଗତ ଅଧିକାରଗୁଡ଼ିକୁ ଜନସାଧାରଣଙ୍କର ଅବଗତି ନିମନ୍ତେ ଯୋଗାଯୋଗ ଏବଂ ପ୍ରଚାର ମାଧ୍ୟମରେ ସୂଚାଇ ଦେବା ନିତାନ୍ତ ଆବଶ୍ୟକ । ଫଳରେ ଏହି ଅଧିନିୟମ ଏବଂ ନିଶ୍ଚିତ କର୍ମନିଯୁକ୍ତି ଯୋଜନା ସର୍ବତ୍ର ବିଶେଷ କରି ଆଞ୍ଚଳିକ ଭାଷାଗୁଡ଼ିକରେ ପ୍ରଚାର ହୋଇପାରିବ ।

ଏହି ଅଧିନିୟମରେ ଥିବା କେତେକ ଜଟିଳ ବିଷୟ ଯଥା- ପଞ୍ଜୀକରଣ, କାମ କରିବା ପାଇଁ ଦରଖାସ୍ତ, ଶ୍ରମିକମାନଙ୍କର ସୁବିଧାସୁଯୋଗ, ସାମାଜିକ ସର୍ବେକ୍ଷଣ, ଅଭିଯୋଗର ପ୍ରତିକାର ଏହି ସମ୍ବନ୍ଧୀୟ ବିଭିନ୍ନ ସଂସ୍ଥାର ଭୂମିକା ଅତି ସରଳ ଓ ପ୍ରାଞ୍ଜଳ ଭାଷାରେ ଜଣାଇଦେବା ଆବଶ୍ୟକ ।

ଏହି ଯୋଗାଯୋଗ ପ୍ରକ୍ରିୟା ଠିକ୍ ଭାବରେ ଫଳପ୍ରଦ ହେଲାବୋଲି ଜଣାପଡ଼ିବ, ଯେତେବେଳେ ଏହି ଅଧିନିୟମରେ କାମ ଖୋଜୁଥିବା ଲୋକ ନିଜର ନାମ ପଞ୍ଜୀକରଣ କରିବା ପାଇଁ ଆଗେଇ ଆସିବେ, ସ୍ଥାନୀୟ ଗୋଷ୍ଠୀଗୁଡ଼ିକ କାର୍ଯ୍ୟ ଚୟନ, ତଦାରଖ ଏବଂ କାର୍ଯ୍ୟକାରିତାର ମୂଲ୍ୟାୟନ କରିବାରେ ପ୍ରତ୍ୟକ୍ଷ ଭାବେ ସାମିଲ ହେବେ । ଏହାଫଳରେ ଶ୍ରମିକମାନେ ଉପଯୁକ୍ତ ଅଧିକାର ପାଇପାରିବେ ।

ଏହା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ପଞ୍ଚାୟତିରାଜ ବିଭାଗ ଏହି ଆଇନଟି  କିଭଳି ଭାବେ ଜନସାଧାରଣଙ୍କ ମଙ୍ଗଳ ବିଧାନ ନିମନ୍ତେ ସହାୟକ ହୋଇପାରିବ, ସେ ଦିଗରେ ସମସ୍ତ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରୁଛି ।



# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ ବାର୍ତ୍ତା

ଗ୍ରାମାଞ୍ଚଳର ଭିତ୍ତିଭୂମି ଆଧାର ଉନ୍ନୟନ କାର୍ଯ୍ୟଗୁଡ଼ିକ ଜରିଆରେ ପାରିଶ୍ରମିକ ଭିତ୍ତିକ ନିଯୁକ୍ତି ଦ୍ୱାରା ଗ୍ରାମାଞ୍ଚଳ ଲୋକମାନଙ୍କର ଜୀବିକା ନିରାପତ୍ତା ନିଶ୍ଚିତ କରାଇବା ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଅଧିନିୟମ (ସେପ୍ଟେମ୍ବର ୨୦୦୫)ର ଲକ୍ଷ୍ୟ । ଚିର ଦାରିଦ୍ର୍ୟ ଯଥା- ମରୁଡ଼ି, ଜଙ୍ଗଲ ଧ୍ୱଂସ, ମୃତ୍ତିକା କ୍ଷୟର କାରଣଗୁଡ଼ିକୁ ସମ୍ବୋଧିତ କରୁଥିବା କାର୍ଯ୍ୟଗୁଡ଼ିକର ନିର୍ଦ୍ଧାରଣ ଏହାର ମାନ ଅଟେ । ଫଳପ୍ରଦ ଭାବେ କାର୍ଯ୍ୟକାରୀ ହୋଇ ନିଯୁକ୍ତି ସୃଷ୍ଟି ଦ୍ୱାରା ଆମ ରାଜ୍ୟର ଅର୍ଥନୀତିକୁ ସୁଦୃଢ଼ କରାଇବାରେ ଏହି ନିୟମ ସକ୍ଷମ ଅଟେ ।

କେନ୍ଦ୍ର ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ଅଞ୍ଚଳର ସମସ୍ତ ଗ୍ରାମାଞ୍ଚଳ ପରିବାରଙ୍କ ପାଇଁ ଓଡ଼ିଶା ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନା କାର୍ଯ୍ୟକାରୀ ହେଉଛି । ଗୋଟିଏ ଆର୍ଥିକ ବର୍ଷରେ ପରିବାର ପିଛା ଶହେ ଦିନର ନିଶ୍ଚିତ ନିଯୁକ୍ତି ଯୋଗାଣ ଏହାର ମୁଖ୍ୟ ଉଦ୍ଦେଶ୍ୟ । ନିଶ୍ଚିତ ନିଯୁକ୍ତି ଯୋଜନାର ସଫଳ ରୂପାୟନ ଦିଗରେ ଯୋଜନା ପ୍ରସ୍ତୁତ କରିବା ସବୁଠାରୁ ବଡ଼ କଥା ।

ଗୁରୁତ୍ୱପୂର୍ଣ୍ଣ ସମ୍ବଳର ବିକାଶ କରୁଥିବା କାର୍ଯ୍ୟଗୁଡ଼ିକର ନକ୍ସା ପ୍ରସ୍ତୁତ ଏବଂ ନିର୍ଦ୍ଧାରଣ ଦ୍ୱାରା ୧୫ ଦିନ ମଧ୍ୟରେ ସମୟଭିତ୍ତିକ ନିଯୁକ୍ତି ସୃଷ୍ଟି ସଫଳତାର ପ୍ରମୁଖ ସୂଚକାଙ୍କ । ଗୋଟିଏ ସମୟସୀମା ମଧ୍ୟରେ କାର୍ଯ୍ୟକାରୀ କରିବାର ଆବଶ୍ୟକତା ଆଗତୁରା ଯୋଜନା ପ୍ରଣୟନ ଉପରେ ନିର୍ଭର କରେ । ଆବଶ୍ୟକତାର ବିଭିନ୍ନ ସ୍ତର ଏବଂ ସମ୍ବଳଗୁଡ଼ିକ ମଧ୍ୟରେ ସମନ୍ୱୟ ରଖୁଥିବା ଏକ ଯୋଜନା ପ୍ରକ୍ରିୟାକୁ ଏହି ଅଧିନିୟମ ଗୁରୁତ୍ୱ ଦିଏ ଯଦ୍ଦ୍ୱାରା ଉପଯୁକ୍ତ ନିର୍ଦ୍ଧାରଣ ଏବଂ ନକ୍ସାକରଣ ହୋଇଥିବା କାର୍ଯ୍ୟଗୁଡ଼ିକ ଯୋଗାଇ ଦେବାକୁ ଜିଲ୍ଲାଗୁଡ଼ିକ ପ୍ରାରମ୍ଭରୁ ହିଁ ଉପଯୁକ୍ତ ଭାବେ ପ୍ରସ୍ତୁତ ହୋଇପାରିବେ ।

ଯୋଜନାଟିକୁ ନିଶ୍ଚିତ କରାଇବା ପାଇଁ ଏହି ଅଧିନିୟମ ଅନୁଯାୟୀ ଜିଲ୍ଲାସ୍ତରରେ ଜିଲ୍ଲାପାଳ ଜିଲ୍ଲା କାର୍ଯ୍ୟକ୍ରମ ସମନ୍ୱୟକାରୀ ଏବଂ ବ୍ଲକ୍‌ସ୍ତରରେ ଗୋଷ୍ଠୀ ଉନ୍ନୟନ ଅଧିକାରୀ କାର୍ଯ୍ୟକ୍ରମ ଅଧିକାରୀଭାବେ ଅବସ୍ଥାପିତପୂର୍ବକ ସମସ୍ତ ଦାୟିତ୍ୱ ନିର୍ବାହ ହୁଏ ।

ଯଦି କର୍ମସଂସ୍ଥାନ ନିମନ୍ତେ ଆବେଦନ କରିଥିବା ଜଣେ ଲୋକକୁ ସେ ଅନୁରୋଧ କରିବାର ୧୫ ଦିନ ଭିତରେ କାର୍ଯ୍ୟ ଯୋଗାଇ ନ ଦିଆଯାଏ, ତେବେ ଏହି ଅଧିନିୟମରେ ନିର୍ଦ୍ଧାରଣ କରାଯାଇଥିବା ହାରରେ ରାଜ୍ୟ ସରକାରଙ୍କ ଦ୍ୱାରା ବେକାରୀଭତ୍ତା ଯୋଗାଇ ଦିଆଯିବ । ବେକାରୀ ଭତ୍ତା ପ୍ରଦାନ କରିବା କାର୍ଯ୍ୟକ୍ରମ ଅଧିକାରୀଙ୍କର ଦାୟିତ୍ୱ ଅଟେ ।

ମୁଁ ଜାଣି ଖୁସି ଯେ ପଞ୍ଚାୟତିରାଜ ବିଭାଗ ସମସ୍ତ ଆବଶ୍ୟକ ପଦକ୍ଷେପ ଗ୍ରହଣ କରୁଛନ୍ତି ଯଦ୍ଦ୍ୱାରା ଏହି ଆଇନ ଗ୍ରାମାଞ୍ଚଳ ଗରିବଙ୍କ ପାଇଁ ସେମାନଙ୍କ ଗ୍ରାମ ପରିସର ମଧ୍ୟରେ ସୁଲଭ ନିଯୁକ୍ତି ପାଇବାର ସ୍ୱପ୍ନ ସାକାର କରିବ । ମୁଁ ନିଶ୍ଚିତ ଯେ ଆମ ଦ୍ୱାରା ପ୍ରବର୍ତ୍ତନ କରାଯାଇଥିବା ମିଶନ ଶକ୍ତି ଗୋଷ୍ଠୀଗୁଡ଼ିକ ଏହାର ସୁଯୋଗ ନେବେ ।



# ମାନ୍ୟବର ପଞ୍ଚାୟତିରାଜ ଏବଂ ସଂସ୍କୃତି ମନ୍ତ୍ରୀ

# ଡା. ଦାମୋଦର ରାଉତଙ୍କ ବାର୍ତ୍ତା

ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଅଧିନିୟମ (ସେପ୍ଟେମ୍ବର ୨୦୦୫) କେନ୍ଦ୍ର ଏବଂ ସମସ୍ତ ରାଜ୍ୟ ସରକାର, ପଞ୍ଚାୟତ ଏବଂ ସ୍ଥାନୀୟ ଗୋଷ୍ଠୀଙ୍କ ମଧ୍ୟରେ ଏକ ସବିସ୍ତୃତ ଅଂଶୀଦାରୀ ରଖେ । ଏହାର କାର୍ଯ୍ୟକାରିତା କ୍ଷେତ୍ରରେ ଗ୍ରାମପଞ୍ଚାୟତର ଏକ ପ୍ରମୁଖ ଭୂମିକା ଅଛି । ଯୋଜନା ପ୍ରସ୍ତୁତ, ପଞ୍ଜିକରଣ, କର୍ମନିଯୁକ୍ତି ଅନୁମତିପତ୍ର ନିର୍ଗମନ, କାର୍ଯ୍ୟ ବଣ୍ଟନ, ୫୦ ପ୍ରତିଶତ କାର୍ଯ୍ୟ ସମ୍ପାଦନ ଏବଂ ଏସବୁର ତଦାରଖ ପାଇଁ ଏହା ଦାୟୀ ଅଟେ । ଗ୍ରାମପଞ୍ଚାୟତଗୁଡ଼ିକୁ ଏହି ଅଧିନିୟମ ଦ୍ୱାରା ଯେଉଁ ଗୁରୁତ୍ୱାରୋପ କରାଯାଇଛି, ତାହା ଧାରା-୧୫ (୭) ଯାହାକି ଗ୍ରାମପଞ୍ଚାୟତ କିମ୍ବା ଜଣେ ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା କାର୍ଯ୍ୟକ୍ରମ ଅଧିକାରୀଙ୍କର କାର୍ଯ୍ୟାବଳୀଗୁଡ଼ିକୁ ରାଜ୍ୟ ସରକାରମାନେ ନିର୍ଦ୍ଦେଶ ଦେଇପାଇବାର ବ୍ୟବସ୍ଥା ରଖାଯାଇଛି ।

ଏହି ଅଧିନିୟମ, ଯୋଜନାଟିକୁ ହାତକୁ ନେବାରେ, ଏହାର ତଦାରଖ, ନିରୀକ୍ଷଣ କରିବାରେ ଏବଂ କାର୍ଯ୍ୟକାରିତାର ସାମାଜିକ ସର୍ବେକ୍ଷଣ କରିବାରେ ଗ୍ରାମସଭାକୁ କ୍ଷମତା ଅର୍ପଣ କରିଛି । ଏହା ସହିତ ଯୋଜନାର କାର୍ଯ୍ୟକାରିତାକୁ ସହଜ କରିବା ପାଇଁ ଗ୍ରାମସଭା ପରି ଅନୁଷ୍ଠାନକୁ ସବିସ୍ତାରେ କାର୍ଯ୍ୟରେ ଲଗାଇବା ନିମନ୍ତେ ପରାମର୍ଶ ଦିଆଯାଇଛି । ଏହି ଯୋଜନା ଗ୍ରାମଗୋଷ୍ଠୀଙ୍କୁ ଲକ୍ଷ୍ୟ ରଖେ, ଯେଉଁମାନଙ୍କ ମଧ୍ୟରୁ ଅନେକ ଅଗମ୍ୟ ଏବଂ ବିଚ୍ଛିନ୍ନାଞ୍ଚଳରେ ବସବାସ କରନ୍ତି ଏବଂ ସେମାନଙ୍କ ନିକଟରେ ପହଞ୍ଚିବା ପାଇଁ ଏହି ଗ୍ରାମସଭା ସର୍ବାଧିକ କାର୍ଯ୍ୟକ୍ଷମ ଆନୁଷ୍ଠାନିକ ମାଧ୍ୟମ ହୋଇପାରିବ । ଗ୍ରାମସଭାଟି ଯୋଜନା ସମ୍ପର୍କରେ ସୂଚନା ବିନିମୟ ପାଇଁ ଗୋଟିଏ ଫୋରମ୍ ରୂପେ ବ୍ୟବହୃତ ହେବା ଉଚିତ୍ ଯଦ୍ଦ୍ୱାରା ଲୋକମାନେ ପଞ୍ଜିକରଣ ଯଥା ଦରଖାସ୍ତଗୁଡ଼ିକର ତଦାରଖ ଏବଂ ଯୋଜନା କାର୍ଯ୍ୟକାରିତାର ପ୍ରତ୍ୟେକ ଦିଗପ୍ରତି ସଚେତନ ହୋଇପାରିବେ ।

ଗୋଷ୍ଠୀଙ୍କର ଅଂଶଗ୍ରହଣକୁ ଉତ୍ସାହିତ କରିବା ପାଇଁ ଗ୍ରାମସଭା ହେଉଛି ବୈଧାନିକମତେ ଜନାଦେଶ ପ୍ରାପ୍ତ ଆନୁଷ୍ଠାନିକ କଳ । ଏଥିସମେତ ସ୍ଥାନୀୟ ତଦାରଖ ଏବଂ ନିରୀକ୍ଷଣ କମିଟି, ସ୍ଥାନୀୟ ହିତାଧିକାରୀ କମିଟି, ସ୍ଥାନୀୟ ସ୍ୱୟଂ ସହାୟକ ଗୋଷ୍ଠୀ, ବ୍ୟବହାରକାରୀ ଗୋଷ୍ଠୀ ଏବଂ ଅନ୍ୟାନ୍ୟ ତୃଣମୂଳ ଗଠନ ଯାହା ଅଂଶଗ୍ରହଣର ଭିତ୍ତି ପ୍ରଶସ୍ତ କରିବା ଦ୍ୱାରା ଏହି ଅଧିନିୟମର କାର୍ଯ୍ୟକାରିତା ପଦ୍ଧତି ସ୍ୱଚ୍ଛ ଏବଂ ଜନଗଣ ଉତ୍ତରଦାୟୀ ହେବାପରି ଗୋଷ୍ଠୀ ଅଂଶଦାନର ଅନ୍ୟାନ୍ୟ ପଦ୍ଧତି ଅନୁସରଣ କରିପାରିବ ।

ଏହି ଅଧିନିୟମ ଅନ୍ତର୍ଗତ ସମସ୍ତ ଦାୟିତ୍ୱ ସମ୍ପାଦନ କରିବା ପାଇଁ ପ୍ରମୁଖ ସଂସ୍ଥାଗୁଡ଼ିକ ତାଲିମପ୍ରାପ୍ତ ହେବାର ଆବଶ୍ୟକତା ରହିବ । ତଦାରଖ ନିରୀକ୍ଷଣ ଏବଂ ସାମାଜିକ ମୂଲ୍ୟାୟନର ଉଦ୍ଦେଶ୍ୟ ପାଇଁ ଏହା ପଞ୍ଚାୟତିରାଜ ଅନୁଷ୍ଠାନ ନିଶ୍ଚିତ ନିଯୁକ୍ତ ଯୋଜନା ସହ ସମ୍ପୃକ୍ତ ଥିବା ଜିଲ୍ଲା ଏବଂ ରାଜ୍ୟସ୍ତରୀୟ ବିଭାଗୀୟ କର୍ମଚାରୀ ତଥା ସ୍ଥାନୀୟ ଗୋଷ୍ଠୀ/ଦଳଗୁଡ଼ିକୁ ସାମିଲ କରେ ।

ମୁଁ ଜାଣି ଖୁସି ଯେ ପଞ୍ଚାୟତିରାଜ ବିଭାଗ ସମସ୍ତ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରୁଛନ୍ତି, ଯାହାଦ୍ୱାରା ଏହି ଆଇନ୍ ଓଡ଼ିଶାରେ ୨୦୫ ଗୋଟି ବ୍ଲକ୍ ଏବଂ ୩୬୭୨ ଗ୍ରାମପଞ୍ଚାୟତ ସମେତ ୧୯ ଗୋଟି ଜିଲ୍ଲାରେ ଥିବା ଗ୍ରାମାଞ୍ଚଳ ଗରିବଙ୍କ ପାଇଁ ସେମାନଙ୍କର ଗ୍ରାମ ପରିସର ମଧ୍ୟରେ ସୁଲଭ ନିଯୁକ୍ତି ପାଇବାର ସ୍ୱପ୍ନ ସାକାର କରୁଛି ।